ଭର୍ତ୍ତି ଭରଣା କରି ଜରୋର । ଗିରିଧାରୀଙ୍କ ନଜନ୍ତ୍ରଙ୍କଷ୍ଟରେ ଯାହା
ଦାଖଲ ହୋଇଅଛି ତାହା ମାଲ ମାହାର୍ଦ୍ଦ ବନ୍ଧାହୋଇ ରହଲଣି,
ପ୍ରତିଜ୍ଞା ବନ୍ଧ ଯେ ତାହା ଶିବ କୈବଲ୍ୟ ; ଯେଉଁକାର୍ଯ୍ୟ ଫଲଗ୍ନୁରେ
ଏତକହାତରୁ ହାତ ପଡ଼ୁଛି ତାହା ବ୍ରହ୍ମହତ୍ୟା ସୁରାପାନ ପରସ୍ତ୍ରୀ
ଗମନ କ୍ରିୟା ପାପରୁ ଗୋଷ୍ଟଏକାର୍ଯ୍ୟ , ଗଣ୍ଡିଧନରୁ ଏଥିପାଇଁ ହାତ
ଲାଗିଲେ ସେ ଧନରୁ ଯେତେ ପୂଣ୍ୟକାର୍ଯ୍ୟ କର ପଛକେ 'ଅମୃତହାଣ୍ଡିରେ
କଣିକାଏ ବିଷ' ଭଳଅ ସବୁ ମାଟି । ଶେଷକଥା ଗିରିଧାରୀଙ୍କ ଘ୍ରାବନା
ଯେ ଏହି ୫ ୬। ଟି ଉପର ମିଳଯାନ୍ତା, ବାକ୍ସସ୍ଥିତ ପଣ୍ଡିତ କପାଳ
ପୋଖ ଅର୍ଜନ ! । ତେଣେ ତେଜମାନ୍ କଣ କରୁଚ ଏତକ ହେଜିବାକୁ
ଗିରିଧାରୀଙ୍କର ମନେ ନାହିଁ । ତେଜମାନ୍ ମନେ୨ ଯାହା ଗାଣ୍ଠି
ଖୋଲବାକୁ ଖୋଜହେଉଥିଲା ତାହାର ସୁବିଧାଟି ପାଇଲା ବୋଲି
ପାହାଡବାନ୍ଧି ବସିଛି । ପାର୍ଚ୍ଚାଦଖଣ୍ଡ କାହାର ? ଅମୀନ ଲୁଗୁଇ ଦେଲେ
ହାତକୁ ଟଙ୍କା ଭରଣି କଲେ କିଆଁ ? ଗିରିଧାରୀ ମୃଷାସୁରା
ହୋଇ ଶିଇଁଛି । ତେଜମାନତାହାଙ୍କ ଗ୍ରାମବାସୀ କଇଣ, ବ
କରାହର ତ ନୁହଇ । ଏକାସଙ୍ଗେ ଉମେଦଦାରୀ କର କ
ଯୋଗକୁ ଏ ଅମୀନ; " ଗୋଡ଼ମାଟ୍ଠି ବାଛୁବା ଖାଲ ବସି
ଠାଉଁ ଭଲ , ରୋଜଗାରୀ ଜାତ କେବେ ଗୋଡ଼ଘସା କେ
ଛଡ଼ିହାଣ୍ଟି" ଏହି ନୀତିରେ ବଡ଼ ସାହେବଙ୍କ ସିରସ୍ତାଦାରହା
ଅନ୍ୟଜଣକ ତେଜମାନ କାମ ପାଇ ସନ୍ତୁପତ । କେତେସହବ
ସାହେବଙ୍କାତ ବୃଷ୍ଟାମଣାଟ୍ଠା ଓଲଟା , ତେଜମାନ୍ ତେନ୍ ଓଟାସ
ଲୋକ, ହୃଣ୍ଡା ମରଦ ଅଖିକୁ ଦିଶିଲେ ହେଲା । ସାହେବ ତ ଜାଣି
ନାହିଁ ଯେ ତେଜମାନ ବାବୁ ମଧ୍ୟ ମଫସଲରେ ଜଣେ ଅମୀନଭ
ଖୁସବାସୀ ଆମଲା, ଅର୍ଜନରେ ମଧ୍ୟ ନିହାନ୍ତ ମୁଲିଆ ନୁହେଁ, ଅଦାଲ
ଚପରାସୀ ବାବୁଙ୍କ ଧରଣର, ଦରମା ଦଶଟଙ୍କା ପାନଖର୍ଚ୍ଚ, ଓ ଅମୀନ
ରୋଜଗାରରୁ ଟଙ୍କାକେ ସୁଉକଏ ; ପାଞ୍ଚମାସରେ ଯାହା ତେଜମାନ
ରୋଜଗାର ପାଞ୍ଚବର୍ଷର ଦରମା ତାଠାରୁ ହେଇ ଚଲଲୁ । ଅଜ

ଯୁଗଟା କନ୍‌ଫରେନ୍ସ ଯୁଗ,-ସବୁଦେଶ ସବୁଜାତି, ସବୁକାମ, ସବୁକଥାରେ ଗୋଟାଏ ମନେକଲେ କନଫରେନ୍ସ ବସିଲା । ଆମ ଅମୀନ ଡେନମାନ୍ ତାଙ୍କର ସେମନ୍ତ୍ରିକା ଗୋଟାଏ କନଫରେନ୍ସ ଅଛି ତାହାର ନିର୍ଦ୍ଧାରଣମାନଙ୍କ ମଧ୍ୟରୁ ଗୋଟିଏ ଯଥା :-ଡେନମାନ୍ ପୃଥକ୍ ବସା କରିବ ନାହିଁ ଓ ସବୁଥିରେ ଅମୀନ ମୁନସରମଙ୍କ ପେଟରୁ ଗୃହପଣ ଭାଗରେ ପେଟ ପୁରାଇବ ॥ ଗୃହପଣ ଭାଗଟା ବନ୍ଦ ବସ୍ତୁ କ୍ୟାମ୍ପରେ ନ୍ୟାୟସଙ୍ଗତ, ତାମକୁ ଦେଖି ସ୍ଥିର କରା ଯାଇଅଛି । ପର୍ଦ୍ଦା ଦଣ୍ଡ କାଢ଼ି ଲୁଚାଇ ଦେଇ ହାତଗୁଣ୍ଟଙ୍କା ଭରଣା କରିବାର ମତଲବ କଣ ?

ଦୁହିଙ୍କ ମଧ୍ୟରୁ ଗୋଟିଏ ରାଜ୍ଞି ତର ଗରୁଡ ଜାତୀୟ, ଓ ଆଉଟି ଏହ ଆହମଧ୍ୟର ଭୋପାଳୀଅ ଜଣେ ମାଲୁଣୀର । ଡେନମାନ୍ଙ୍କ ବଡ ସଚ୍ଚରିତ୍ର ଯୁବକ; ବସାଟି ଗୋଟିଏମାତ୍ର ଘରବୋଲି ଓ ଅମୀନବାବୁଙ୍କ ବିରସ୍ତା ଥିବାରୁ ଯାକ୍‌ସାର, କେବଳମାତ୍ର ଗିରିଧାରୀଙ୍କ ଶଯ୍ୟାଟିଦ୍ୱାରା ପୂର୍ଣ୍ଣ ରହିଯାଏ; ତାହା ଲଗାଉଟରେ ଯେଉଁ ଚାଲିଖଣ୍ଡିକରେ ପାକକ୍ରିୟା କରାଯାଏ ସେଠାରେ ବାସନକୁସନ ହାଣ୍ଡି ଗୁଡ଼ିକର ରକ୍ଷାକଲେପ ଡେନମାନ୍ ରାତିରେ ନିକେ ଶୁଅନ୍ତି । ଅନେକପ୍ରକାର ବିଚାର କରି ନିତ୍ୟେ ଆହାରାଦି ଶେଷକରି ନିଦ୍ରିତ ହେବାବେଳେ ସୁଦ୍ଧା, ତାହା ମନରେ ଆନ୍ଦୋଳନ ଚାଲିଛି । ଇତିମଧ୍ୟରେ ଥରେ ପଠାଣସାହି ନିବାସୀ ହୋସେନୀ ଚୌକିଦାର ଆସି ଗିରିଧାରୀଙ୍କ ସହିତରେ ଫୁସଫାସ୍ ହୋଇଯିବା ଦେଖି ଡେନମାନ୍‌ର ମନରେ ଅଧିକତର ଆନ୍ଦୋଳନ ଚାଲିତ । ଫଳତଃ ସେ ରାତିଟା ନିକେ ନଶୋଇ ଗୁପ୍ତଭାବେ ତିବଧି ଲକ୍ଷକରି ଏତିକି ଜାଣିପାରିଡ଼ି ଯେ ଚୌକିଦାର ସହାୟରେ ଅମୀନବାବୁ ଗୋଟିଏ ନୈଶଯୌବନଲୀଳାରେ ମାତିଗଲେ । ସନ୍ଦେହଂଷାର କାରଣ ଯଥେଷ୍ଟ ଅଛି; ବିଶେଷତଃ ପେଟ ଓ ପାଟଣା ଉଭୟ କଥାରେ ଡେନମାନ୍ ମାଛକଣ୍ଟାତକ ପାଉଚ, ଥରେ ଦୁଇଥର ଗିରିଧାରୀଙ୍କ ନୁଙ୍ଗୁରାକଥା ଧରିଛି । ଟୋକା ନନ୍ଦ ତା ଭିତରୁ ଅଧେନେବ ନାହିଁକି ? ଏଠିସିନା ସେ ଅମୀନ ମୁଁ ଡେନମାନ୍‌ଙ୍କ ଗାଁରେ ଏ ତା

ଚୌକିଦାରୁଷ ଅନ୍ୟ ବହଣାକାନରେଷ୍ଟା ବହିବାର ଅଧିକାର ପାଇନା
ହାନ୍ତି । ଏ ଖାଇ ବସିଲାବେଳକୁ ଅଗ; ମୁଁ ଏହାଙ୍କପାଇଁ ଠାଆ କରି
ଦେବ ! ହେଉ, ଦିନେ ମୋ କାଲ ପଡ଼ିବ ଯେ' । ଲୁଣ୍ଠାପୃତଃ ଗୋଟି
ଅମୀନ ଙ୍କୁ ବଦନାମ୍ ଓ ଦଣ୍ଡାର୍ହ କରାଇପାରିଲେ ଅ ଏନା ମୁଁ କ
ଜଣେ ଅମୀନ ବା ମୋହରିର ହୋଇ ବସିବି" । ଗିରିଧାରୀ ଅମୀନର କି
ଏତେ ଆଡକୁ ନଜର ଯାଉନାହିଁ । ମୁଷାମୁରାଇ ଛୋଲ ଶିଙ୍ଗିଲାବ
ସେ ନଜେ କହବୋଲି ଏ ଚେନମାନ୍କୁ ଆଣି ସମ୍ପୂର୍ଣ୍ଣ ବିଶ୍ୱାସ ସ୍ଥାପ
କରି ଅଛନ୍ତି ।

ଇହାଁ ଆରଦିନ ଭୋରରୁ ଚେନମାନ୍ ଏକପ୍ରକାର ଅନୁପସ୍ଥିତ ଗ
ଗ୍ରାମମଧ୍ୟକୁ ଯାଇ ଲୁଅଡେ ବୁଲୁଚ । ଗିରିଧାରୀ ଲୋକପଠାଇ ଗା
ଉଲ୍ଲିଖିତମାନଙ୍କୁ ଗ୍ରାମ୍ୟଲଲନାର ମନ୍ଦିରସମ୍ମୁଖସ୍ଥ ପ୍ରତିବେଶୀର ଦ୍ୱାରଠା
ଡକାଇ ଆଣି ଟେଜନାଧ ଶେଷେ ଷେବଜରୀବକାର୍ଯ୍ୟରେ ବାହା
ଗଲେ । ସେଦିନ ଅନ୍ଧସା କରି ବେଳ ଗଡ଼ିଗଲା, ମୁନସ
ମିସ୍ତ୍ରୀଙ୍କର ଆଗମନ ହେଲାନାହିଁ । ସୁତରାଂ ମନେ ଦିହଙ୍କି ଦି
ଖୁସୀ, କଲୁ ଖୁସୀହେବାର କାରଣମାନ ଅମୀନ ଚେନମାନ
ସମ୍ପୂର୍ଣ୍ଣ ଉତ୍ତର ଦକ୍ଷିଣ ପୃଥ୍ୱୀ କେନ୍ଦ୍ରବତ୍ ପରସ୍ପର ବିପରୀତ ହୋ
ଥିଲା । ଚେନମାନ୍ ମନେ ଗତ ବାଲ୍ଲାଣି ଏଥର ଗିରିଧା
ଗିର ଧରାଇଦେବ, ଆଉ ଥିବେ ନାଁ ଉଠି ଘାସ ଖାଇବେ ! ନ
ଚୌକୀଦାର ନଜେ ଗ୍ରାମ୍ୟଅବଦା ଖର୍ଚ୍ଚାଦାତାମାନେ ସାକ୍ଷଦେଲେ ଦ
ମଲୁ ଶୁଦ୍ଧା ବାଠ ନଥିବ ଗିରଧାରୀଙ୍କୁ ନିର୍ଦ୍ଦୋଷୀ କରଦେବାକୁ;
ଗଲାବନ୍ଦବସ୍ତର ମାଲବରାମଦୀ ଏବେ ହୋଇ ନପାରେ । ଉ
କନଫରେନସର ଅନ୍ୟତମ ନିର୍ଦ୍ଧାରଣ, ଯେ ଦେଖି ଶୁଣି " ଘ
ଦାଖଲଘର " କାମଟି ଦୂତଦ୍ୱାରା କରାଯାଉ, ସରକାରୀ ଡା
ଭାଗ ମୁହଁରେ ଦିନା 'କନ୍‌ଫିଡନସିଅଲ୍', କାର୍ଯ୍ୟରେ " ମନିଅର୍ଡ଼
ତାଲିକା ହାକମ'ଚାହଲେ ଦେଇଦିଏ। ନନ୍ଦଠୋକାର ଆଉ ଅସଲ
କଣ କି ? ଇତି ଅପ୍ରି ବ୍ୟପ୍ରି ଟକାପଙ୍କ ମାହେ ଡିସମ୍ବର ତା ୧୫

## ୮ମ ଅଧ୍ୟାୟ ।

### ବଦର କଦର ।

ଜମୀଦାର ଜଗନ୍ନାଥମହାପ୍ରଭୁ ମାରଫତ ଶ୍ରୀ ଠାକୁରରାଜା, ତହିଁର ଆଧୁନିକ ହାକମ ମାନେଜର ସାହେବ । ଏହି କଚେରୀରେ ଜଣେ ଚୁଟିଆ ତହସିଲଦାର, ବେତନ ଦଶଟଙ୍କା ଓ ଅସୁଲ ଜମାବନ୍ଦୀ ଯାତ-ହଜାରରୁ ଶତକରା ପାଞ୍ଚଟଙ୍କା ଅସୁଲିଉପରେ କମିସନ । ଏହାଙ୍କ ତାବେରେ ଅନ୍ୟାନ୍ୟ ଚାକରପ୍ଯା ଗୁଡ଼ାଏ ଅଛନ୍ତି । କଚେରୀର ଖମାର ବୃଷ ଗୁଡ଼ାଏ ଅଛି, ଯାତବାଟୀ ଜମୀ ହାତଚାଷ, ଚାଷବଲଦ ବିହନ ଓ ହଳଆ ଦିଓଟି ମୁକରର; ଆଉ ହାତଚାଷ ଜମୀ ଗୁଡ଼ାକ ହୁନ୍ନପୂଁ । ତର ଯେ ଦସ୍ତୁର ସେହି ଦସ୍ତୁରରେ ପ୍ରଜାଏ ଭୋଗଭଷି ଖଳାରେ ଅମଲ କରଯାନ୍ତି । ରାଣୀସାହେବାଙ୍କ ତେଲହଳଦିତଳେ ଏହିପରି ତନିଚାଷ-ବାଟୀ ଖଞ୍ଜାଅଛି । ତାହାମଧ୍ୟ ଖମାର ଜମୀସହିତ ଏକଦସ୍ତୁରରେ ଅମଲ ହୋଇ ଉତ୍ପନ୍ନଟା ପୃଥକ୍ ରଖାହୁଏ । ଏବକାର ଯେ ମାନେଜର ଆସି-ଛନ୍ତି ସେ ସାହେବ ଜାତି ଲୋକ, 'ହାତଚାଷ ଜମୀ କ'ଣ' ବୁଝିବା କଠିଣ । ହାତବୁଣା ଲୁଗା, ହାତଲେଖା କାଗଜ, ହାତଛପାରି ରୁଟୀ, ଏତ 'ହାତ' ଶବ୍ଦର ଅର୍ଥ ଜାଣନ୍ତି ଯେ 'ହାତ' କହିଲେ 'କଳ'ର ପସ୍ତିତ ବା ଅଭାବ ବୁଝାଏ, ଯଥା ହାତବୁଣା ଲୁଗା; କଳବୁଣା ଲୁଗା, ତଦ୍ରୂପ 'ହାତଚାଷ' ଜମୀର ଅର୍ଥ ସାହେବ ବୁଝିଛନ୍ତି ଯେଉଁ ଚାଷ-ଜମିକ ହାତରେ ହୁଏ, ବଲଦ ବା ମଇଁଷୀ ଲାଗନ୍ତି ନାହିଁ । ତହ-ସିଲଦାରଙ୍କୁ ବୁଦ୍ଧି ଦିଶିଗଲା, ଫେର ରିପୋର୍ଟ କଲେ ଯେ ହାତଚାଷ କହେଁ 'ନିଜଚାଷ' ଜମୀ । ସାହେବ ବହାରଜଲାରୁ ଶିଖିଥିସି ଏଠା ମାନେଜରୀ କରୁଛନ୍ତି, 'ନିଜ' ଅର୍ଥ ଆପେ । ତେବେ ଜଗନ୍ନାଥ ତ ଚଳନ୍ତି ନ ପାଦୋ ନ ପାଣି, ରାଜାତ ବର୍ଷେକେ ଥରେ ମାଡ ଦେହୁଡ ପନ୍ତିନାହିଁ, 'ନିଜ' ଅର୍ଥ 'କାହାର ନିଜଚାଷ'? ତହସୀଲଦାର ହଟାଗ୍ର ବାକ୍, ଫେର ରିପୋର୍ଟ ହେଲା ଯେ 'ଖମାରଠାର ଚାଷଜମୀ' । ମାନେଜରଙ୍କର ହୁକୁମ ବେଦର ଗାର, ସମସ୍ତଙ୍କର ବୁଦ୍ଧି ତାଙ୍କ ଆଙ୍ଗୁ-ଳିରେ, କଏ ବା ଆପତ୍ତି କରିବ? କାହାର ଲାଜ? ମାନେଜରଙ୍କ

ହୁକୁମ ଅନୁସାରେ ‘ ଖମାରଠା ଚାଷଜମି’କୁ ଜବର ଚାଷ କରନ୍ତି ତାହାର ତାଲିକା ପ୍ରସ୍ତୁତ ହୋଇ ସଦର ସିରସ୍ତା ସାମିଲ ରହିଅଛି । ପିଣ୍ଡୁଡ଼ିଙ୍କୁ କୋଷେବାଟରେ ଗୁଡ଼ି ପଡ଼ିଥିଲେ ବାସେ, ଅମୀନ ମୁନସରିମଙ୍କୁ ଏତଦ୍ ହାଲ ଜଣାଯିବା କଣ ଦୁସ୍ତର ? ବେଶ, ବନ୍ଦୋବସ୍ତ ତଥା ବେବନ୍ଦବସ୍ତ ଲାଗି ଚାକର କରନ୍ତି, ଦିବାରାତ୍ର ଚିନ୍ତା, କପରି କିଛି ଉପାୟ ଭାବିଲେ ସିନା ପେଟ’ଟି ସହଜ ହେବ ! ଜଳଦପୁର ଯଜାଗୁଡ଼ିକ ବଡ଼ ଜଗନ୍ନାଥଭକ୍ତ, ଅମୃତମଣୋହି ଧନ ଅପହରଣ କରନ୍ତିନାହିଁ । ମୁନସରମ୍ ମିୟାଁଙ୍କର ଆଉ କାମ କ’ଣ ? ତାଙ୍କ ନୈଶ ସଭାପତିତ୍ୱରେ ଠାବେ ଗୁପ୍ତସଭା ବସି ସ୍ଥିର ହେଲାଯେ, ଠାକୁର ରଜାଙ୍କଠାରୁ ଲଗାଏତ ପଣ୍ଡା ପଡ଼ିହାରୀ ସମସ୍ତେ ଅମୃତମଣୋହି ଧନକୁ ଯେପରି ବ୍ୟବହାର କରୁଛନ୍ତି ଆମେମାନେ ସେହିପରି କଲେ ଦୋଷ କ’ଣ ? ଜଗନ୍ନାଥଙ୍କୁ ‘ଦେଖାଇ’ ଖାଇବା କଥା, ମହାପ୍ରସାଦଖେଇଟି ସ୍ୱଦ୍ଧା ବଜାରରେ ବିକ୍ରୟ ହୋଇ ସେହି ପଇସାରେ ଖଇଙ୍ଗା ମଞ୍ଜୀ ଯାଉଛି, ଏ କାର୍ଯ୍ୟରେ ତାଙ୍କର ପାପ ହେଉନାହିଁ । ନିକଟରେ ଭୋଗ କଲେ ଯାହା, ଚନ୍ଦ୍ରମଣୋହି କରାଇଲେ ସେହି ଏକଫଳ, ‘ଭାବ ଇଚ୍ଛନ୍ତି ଦେବତା,’ ଇତ୍ୟାଦ ନଜୀର ଦେଇ ସଭାରେ ମେଳ କରିଦେଲେ ଯେ “ହାତଗ୍ରସ୍ତ ଜମିଗୁଡ଼ିକ ଯେଉଁ ମାନେ ଭୋଗଧରନ୍ତି ସମସ୍ତେ ନିଜ’ ନାମରେ ପଟ୍ଟାକରାଇ, ଶେଷକୁ ଧା ୪୨ ସ୍ୱରେ ଟଙ୍କା-ଖଜଣା କରିନେଲେ ତହସିଲଦାରଙ୍କୁ କେନ୍ଦତ’ କଫା ଏତ ପଡ଼ିବ, କେତେ ହସାବ କଡ଼ାପ ହବଗ୍ରଣରୁ ରକ୍ଷା ପାଇବେ !” । ମୁନସରିମ୍ ମିୟାଁ’ଙ୍କ ପଠାଣ, ତାଙ୍କର ଅମୃତମଣୋହି ପ୍ରତି ଅମୀନ ଅପେକ୍ଷା ବେଶୀ ଲୋଭହେବାର ଅନ୍ୟାୟ ନୁହେଁକି ? ତାଙ୍କ ଠାକୁରସେବା ଜଗନ୍ନାଥଙ୍କ ସେବାର ଠିକ୍ ଓଲଟା, ଜୀବେଦୟା ତାଙ୍କର ଭିନ୍ନପ୍ରକାରର, ଅର୍ଥାତ୍ ଆହାର୍ଯ୍ୟଜୀବର ଗଳାରେ ଛେଛି କଣାଟିଏ କରିଦେଲେ ସହଜେ ଯିବ, ବେକରୁ କତଲ୍ କରିବା ନୃଶଂସତା—ମୁନସରିମ୍ ବାବୁଙ୍କୁ ବଳରେକାଦେଇ କରି ତାଙ୍କଠାରୁ ହାଇକୋର୍ଟ ବା ବୋର୍ଡ ମଞ୍ଜୁରୀ ମିଳଯାଉଛି । ଅଥ

ଯାଏ ଯେତେ୨ ନିଜଚାଷ ଜମୀ ଖସଡ଼ାହୋଇ ଗଲା, ତାହାର ସଂଶୋଧନ ଏପରି କଲମ ଓ କାଳି ମିଳାଇ କରାଯାଉ ଯେପରି 'ଆଦ୍ୟରୁ' ଯେ ସବୁ ରଇତଙ୍କ ତଳେ ଖସଡ଼ା କରାଯାଇ ଅଛି, ଏଥିପାଇଁ ଅମୀନ ବା ମୁନସରିମ୍ ଯେପରି ଖାଲରେ ନ ପଡନ୍ତି, ନମ୍ବର ଗୋଟିକେ ପାଞ୍ଚମୁଦ୍ରାରେ ଅତିକଷ୍ଟରେ ରାଜୀ। ମାନେଜର ସାହେବଙ୍କ ଆଦେଶ ଅପେକ୍ଷାରେ ତହସିଲଦାରବାବୁ ବଦର୍ ମଧ୍ୟ କରିପାରୁ ନାହିଁ, ରିପୋର୍ଟ ଉପରେ କଏଫିୟତ ଦେଇ୨ ପନ୍ଦରଦିନ ବିତିଗଲାଣି। ଶେଷକୁ ମାନେଜରଙ୍କ ଆଦେଶର ଅପେକ୍ଷା ନ କରି ତହସୀଲଦାର ମୁନସରିମ୍-ଅମୀନଙ୍କୁ କଚେରୀଠାରେ ରାତିଏ ପୂର୍ଣ୍ଣାହୁତିଦେଇ ବଦଲ୍ ଗୁଡ଼ାଏ ଲେଖାଇଛନ୍ତି, ଯେ 'ଅମୁକପ୍ରଜା ଅମୁକ ନିଜଚାଷପ୍ଲଟକୁ କେବେହେଁ ଧରିନଥିଲେ, ମେଳକରି ମିଥ୍ୟାଦାବୀ କରନ୍ତି, 'ଆମର ନିଜଚାଷ' ଖାଏମ ରହୁ।'

ତେଣେ ମକଦ୍ଦମୀ ବାବତରେ ପ୍ରଜାଙ୍କୁ ଏହି ହାଓ୍ୱା ବ୍ୟସ୍ତ କଲାଣି, ନିସ୍ପୃହା ମକଦ୍ଦମମାନଙ୍କର ସତ୍ତ୍ୱରେ ପ୍ରଜାଙ୍କୁ ଭାଗ ଦିଆହୋଇ ନାହିଁ, ଏ ସନରେ ହାତଚାଷ ଜମୀ ପଡ଼ିଆ ପକାଇ ରଖିଛନ୍ତି ତଥାପି ପ୍ରଜାଙ୍କୁ ଭାଗଦେଇ ନାହାନ୍ତି। ପୂର୍ବ୨ ସନମାନଙ୍କରେ ଖଣ୍ଡେ୨ ବା ପ୍ରଜା କେହି୨ ଧରିଥିଲେ ସେମାନେ ରାଜାବାଲୁକର ପ୍ରଜାଙ୍କ ସାହସ ଦେଖି ନିଜେ୨ ଲାଲାୟିତ, 'ଅପର ତାଙ୍କର ମଧ୍ୟ ନିଜଚାଷ ଜମିମଧ୍ୟରୁ ଖଣ୍ଡିଏ୨ ରୟତୀ ଜମା ହୋଇଯାଉ'ବୋଲି। ମକଦ୍ଦମଗୁଡ଼ାକ ଏକଯୋଗହୋଇ ଅଧହୋଡ଼ାଏ ସରଜ ଟଙ୍କା ଗାଦାତୁଠାଇ ବନ୍ଦୋବସ୍ତ ଖର୍ଚ୍ଚା ଦାଖଲକରି ଦେବେ ବୋଲି ରଖିଛନ୍ତି। ବସ୍ତୁତଃ "ଅତି ଲୋଭକରି ହୁଇଅଡ଼ୁ ପକାଇବା ଅନ୍ୟାୟ" ଏହି ନୀତିଟି ଗିର୍ଣ୍ଣଧାରୀବାବୁ ଓ ମୁନସରିମ ଏକ୍ଳା ବିଚାରରେ ରହି, ମକଦ୍ଦମୀ ଇଲାକାର ପ୍ରଜାଙ୍କ ତରଫରୁ ବଦଲ ଲେଖି ନାହାନ୍ତି। ପ୍ରଜାଏ କ ସହଜରେ ଛାଡ଼ିବା ଜନ୍ତୁ! ଗାଁମଧ୍ୟରେ ଗୋଟିଏ ବୃଷ୍ଟପକ୍ଷୀ ହିନ୍ଦୁ, ଓ ଗୋଟିଏ ବୃଷ୍ଟପକ୍ଷୀ ପଠାଣ, ଏପରି ଦୁଇମୂର୍ତ୍ତି ଟାଉଣୀ

ଓରଫ ମୁକ୍ତାରଙ୍କର ଘର । ପ୍ରଜାଗୁଡ଼ିକଙ୍କର ପ୍ରକୃତ ମା ବାପ । ତେଣୁ
ମହାଜନଙ୍କ ତାଲପତ୍ର-ଗୋଜା-ମାମଲତ ଏ ହିନ୍ଦୁଙ୍କ ଅନୁଗ୍ରହରୁ ଉଠି
ଯାଇଛି; ସୁଧ ଉପରେ ସୁଧ ସହିତ ଟଙ୍କା କରଜ ଦେବା ଏବଶୁ
ବନ୍ଦପଡ଼ିଗଲାଣି । ମାହାଜନ ତନ ଚାରୋଟି ଯେ଼ ଏହି ମୌଜାରେ
କାରବାର କରନ୍ତି ତାଙ୍କର ଜନ୍ମ ମୁକ୍ତାରବାବୁହିସୁଙ୍କ ଉପରେ
ଲେଶମାତ୍ର ଅବିଶ୍ୱାସ ବା ଅସନ୍ତୋଷ ରହିପାରି ନାହିଁ, କାରଣ ମୁକ୍ତାରେ
ଏଣେ ପ୍ରଜାଙ୍କୁ ବେଶୀ ଦେଣସୁଧ ଆଦରୁ ରକ୍ଷାକରିଦେଇ, ତେଣେ
ବର୍ଷକେ ମହାଜନ ପିଛେ ଦ ଚାରିଟା ଆସ୍‌ମାନ୍ ଉଗ୍ରୀଜାରୀ ସୃଷ୍ଟିକରି
ଦେଇ କ୍ଷତିପୂରଣ କରାଇଦେବା ପାଇଁ ବରାବର ଯତ୍ନବାନ୍ । ମୁକ୍ତାର
ହିସୁଙ୍କର ଯେବେ କେହି ଶତ୍ରୁଥାଏ ତେବେ ସେ ଆପେ଼, ଆପଣ
କରୁଛେ ଶତ୍ରୁତା ରଖନ୍ତି । 'କୃଷ୍ଣପକ୍ଷୀ'ର ଅର୍ଥ ଯାହାହେଉ ତାହାର
ଧର୍ମଟି ସବଂଶ ଏକ୍କା । ନପାବାଲରେ ଗୋଟିଏ ସାଧା ପିଭୁଲା କରିଦେଇ
ତା କାନରେ 'କୃ' ଅକ୍ଷରଟି କହିଲାମାତ୍ରେ ବାଲିପିଭୁଲା ହାତରୁ
ଉଠେଇବ, ଓ 'ଷ୍ଣ' ଅକ୍ଷରଟି କହିଲାକ୍ଷଣି ତମ ଗାଲରେ ଗୋଟି
କଣ୍ଟକଣ ଦାନ୍ତ କରି ବସାଇଦେବ । ଏହାଙ୍କର ପ୍ରକୃଷ୍ଟଧର୍ମ "
କାହାରି ନୁହନ୍ତି "—ନିଜ 'ମା'ଆର ମଧ୍ୟ ନୁହେଁ । ଯାହାଠାରୁ ଉ
କାର ପାଇଥିବେ ତାହାରି ଅନିଷ୍ଟ ନ କଲେ ଧର୍ମ ରକ୍ଷା ହେଲାତ
'ସମଃ ଶତ୍ରୌଚ ମିତ୍ରେଚ', 'ଆତ୍ମୈବ ମନ୍ୟତେ ଜଗତ୍' ଏ
କତ଼ ନଜର ଖଟାଇଦେଇ ଦେଖିଲ, ଉପକାରୀର ଅପକାରଟା ନ୍ୟାୟ
କ ନାଁ ! ବଙ୍ଗଦେଶରେ ସ୍ୱର୍ଗୀୟ ବିଦ୍ୟାସାଗର ଈଶ୍ୱରଚନ୍ଦ୍ରଙ୍କୁ ଜ
କଏ କହିଲା " ମହାଶୟ ଅମୁକଲୋକ ଆପଣଙ୍କର ବହୁତ କୁତ୍ସା କ
ଥିଲେ " । ବିଦ୍ୟାସାଗରେ ବିସ୍ମିତହୋଇ କହିଲେ " ଅସମ୍ଭବ,
ମୋହର କୁତ୍ସାକରିବ କାହିଁକ, ମୁଁ ତ ତାହାର ଲେଶମାତ୍ର ଉପକା
କେବେ କରିନାହିଁ, ସମ୍ପୂର୍ଣ୍ଣ ଅପରିଚିତ " ! ସୁତରାଂ ପ୍ରଥମେ
ମୌଜାରେ ଅମୀନ-ପରେକ୍ଷ-ପଦ ର ସମ୍ବାଦ ମଲାର ହେବେ ଯେ

ଛୁଟିଚନ୍ତି, ଛୁଟି ନେଇ ଗ୍ରାମକୁ ଆସିଥିଲେ, ଓ " ଅମୀନ ତାଙ୍କର
ବନ୍ଧୁ ଓ ମୁନସରମ ତାଙ୍କ ଅଜା " ଏହିପରି ଅଫବା କର ଯାଉଥିଲେ;
ଅମୀନ ଏହି ଅଫବାକୁ ମାନିବା ନିମନ୍ତେ ବାଧ୍ୟ, କିନ୍ତୁ ମୁକ୍ତାରଙ୍କ
ଧର୍ମପତ୍ନୀ ତାହା ନୁହେଁ । ମୁନସରମ ମିଯାଁ ଆଉ ପନ୍ଦରଦିନେ ଲୁଆଡେ
ହୋଇଯିବେ ! ଧର୍ମ ଜଗିବାକୁ ଜଣ ବିହାର ଦେଶରେ ଯାଗା
ଥିଲା ! ଏଠିକି କଣ ଧର୍ମ ଜଗିବାକୁ ଆସିଛନ୍ତି ? ।

ମକଦମୀ ବାଡର ପ୍ରଜାଏ ନିଜତାଷ ବଦର ଲେଖାଇବାକୁ ନା
ଅର ଗଛାଗଛି ଯେ ଯାହାର ମୁକ୍ତାରଙ୍କ ଆଶ୍ରୟ ନେବାକୁ ଦୌଡ଼-
ଥିଲେ । ଫଳରେ ପ୍ରଜା ଜଣକେ ଟଙ୍କାଏ ୨ ସଲାମିଦେଇ ଖଣ୍ଡିଏ ୨
ଉସାକଥା ସାଧା ଦରଖାସ୍ତ ଡାକଦ୍ୱାରା ବନ୍ଦବସ୍ତବଡସାହେବଙ୍କ
ହଜୁରକୁ ପ୍ରେରଣ କରିଦେଇ ଚୁପଚାପ ଘରେ ବସିଛନ୍ତି, ଏହା ଯଥେଷ୍ଟ
ହୋଇଗଲା; କାରଣ ବଡସାହେବଙ୍କଠାରୁ ସାନ ସାହେବ, ତାଙ୍କଠାରୁ
କାନୁଗୋଇ ସାହେବ, କାନୁଗୋଇଙ୍କଠାରୁ ମୁନସରମ ମିଯାଁଙ୍କୁ ଆଦେଶ
ଆସିଛି ' ବଦରରେ ଦାଏର କର ' ।

ବଦର ତାଲିକା କାଗଜଟି ଲମ୍ବାରେ ଛଅହାତ ପ୍ରସ୍ତରେ ଦୁଇହାତ,
ଉଭୟ ଫାଳରେ ଲେଖା ହେବାର କଥା, କିନ୍ତୁ ଗିରଧାରୀଅମୀନଙ୍କର
ଇଂରେଜୀ ପଢା, କାଗଜର ଗୋଟାଏ ଫାଳରେ ଲେଖିବା ଅଭ୍ୟାସ,
ଚାନ୍ଦପୁର ମୌଜାର ଛଅଶିହ ନକସାର ପଏମାସ ଖସଡା ପ୍ରାୟ ସର-
ଣି, ଖସଡାନମ୍ବର ଦୁଇହଜାରରୁ ଉପରକୁ ଉଠିଲା, ଆଉ ମାସେ
ଶ୍ରେ ବନ୍ଦୋବସ୍ତ ଜୋର୍ ଲାଗିଲେ ମୌଜା ଖତମ ହେବ ଓ ପାର୍ଟି ବାନ୍ଧି-
ଦେଇ ଅମୀନ ବାହାର ଯିବେ । କାନୁଗୋଇ ବାବୁଙ୍କ ବଦର ଫଏ-
ଦିକାମ ହସ୍ତାକୁ ହସ୍ତା ଛୁଣ୍ଡିଯାଏ, ସେ ସବୁ ସସ୍ତା ଶ୍ରେଣୀର ବଦର;
ଯଥା, ୧ । ବାପ ମରିଛି ସବୁ ପୁଅଙ୍କନାମ ଦରଜ ହେଉନାହିଁ, ୨ ।
ଉପରେ ଗୁରୁଟା ବୋଲଗଛ ମଧ୍ୟରୁ ଛଅଟା ଲେଖାହୋଇଚି ଆଉ
ଗୋଟାଏ ଲେଖାହେବ, ୩ । ଜମିହପଟ୍ଟର ଭେଡାଖଣ୍ଡିଏ ଅଛି, ପ୍ରଜା

ଅନୁସରଣକରି ତାଲୁ ‘ ଧୋଫସଲ ବୋଲଥ’ ତଳେ ଲେଖାଇ-
ନେବ । ୪ । ଆମ୍ବଗିଗ୍ଧ ଜମୀଦାରଙ୍କର, ସେଥିରେ ପ୍ରଜାଙ୍କର ବାନ୍ଧ-
ଗ୍ଧଲିବାରି ଅଧିକାର ଲେଖାହେବ, ଇତ୍ୟାଦି ୨ । ( ପ୍ରଥମ ) ଅର୍ତ୍ତଲ
ବସନ୍ ଓ ଦେସ୍ପଂ ବସମର ବଦର ଗୁଡ଼କ ଖୋଦଛୋଟକର୍ତ୍ତା
ବା ସାବଦ୍ଧାକମ ସାହେବଙ୍କ ହୁକୁମ ଦରକାର; ହାକମ ତାର
କଣ୍ଡଦେଲେଣି, ଏ ଟୋକ୍କା ହାକମଙ୍କ ରବାକ୍ ଗିରଧାରୀ ଆଗରୁ
ଭଲ୍ଲୁ୨ ଶୁଣିଲେଣି; ସେଥିପ୍ରତି ସାବଧାନ ହେବା ଲାଗି ମୁନସହିମ୍
ମିର୍ଯ୍ୟାଙ୍କ ଉପଦେଶ ପାଇ ଅଛନ୍ତି, ଯେ ବଦରଗୁଡ଼କ ଏପରି ନିୟମରେ
ତରଭବ କର ରଖ ଓ ଏପରି ନିୟମରେ ‘ ସର୍ଭେ ’ କର ଦେଇ-
ଥାଅ ଯେ, ପନ୍ଦରମିନଟ ମଧ୍ୟରେ ନକୁଛ ତରଣ ନହେଲେ ଅନ୍ତତ
ପନ୍ଦରନମ୍ବର ବଦର୍ ଗଡ଼ନ୍ ହୋଇଯିବ । ହାକମଙ୍କ କଥା, ହଳଅ
ଦଶଘଣ୍ଟା କାମକରି୨ ଯାହା ପ୍ରସ୍ତୁତକରି ରଖିଥାଏ ଖମାରୋଇ ଅଧି
ଘଡ଼କେ ସେତକ ଚୁ’ଣି ଦେଇଯାଏ ଟକ ? । ଶୀତଦିନ ଦିନ, ରାତର
ଭେର ସହଳ ଅନୁପାତରେ ସକାଳୁ ଶଯ୍ୟାତ୍ୟାଗ କର ନକୁଛ ଘଣ୍ଟାଟ ଏ
‘ବାବୁ-ମନୁଷ୍ୟ’ ଜାତୀୟଙ୍କ ନିତ୍ୟକର୍ମରେ ଯାଏ, ତହିଁରେ ବେଶଭୂଷାଦି
‘ସାହେବ’ ଜାତୀୟ ନିତ୍ୟକର୍ମରେ ଘଣ୍ଟାଟିଏ ଗଲେମଧ ପରବାଏ ନାହିଁ,
ଅମ୍ଭୃଘଣ୍ଟା ‘ହାକମ’ ଜାତୀୟ କାୟିକବ୍ୟାୟାମ ବାବଦ; ବନ୍ଧୁକ୍ ମୃଗୟା
ବାଦ ଦେବା ଅହାକମୀ ଅଭ୍ୟାସ ହୁଅନ୍ତା, ସାହେବ ହେବାକୁ ହେଲେ
ଘୋଡ଼ା ଯେପରି ଅତ୍ୟନ୍ତ ଅତ୍ୟାବଶ୍ୟକୀୟ ସହାୟ, ବନ୍ଧୁକଟିଏ ଠି
ସେହିପରି, ନଥିଲେ ବଡ଼ସାହେବଙ୍କ ଆଖିରେ ‘ ସାହେବ ହାକମ
ବୋଲି ଦେଖାଯାନ୍ତି ନାହିଁ ବୋଲି ଗୁଜ୍ଜମଲ୍ଲ ପାଇଛନ୍ତି; ଘଣ୍ଟାବାଜନ
ଦଶ, ସାହେବଙ୍କର ଖାନା ଶୀଘ୍ର ୨ ସାରି ଜଳଦପୁରମୌଜା ଝୁଲି ବ
ବେଲକୁ ବାରଟାବେଳ ଗଡ଼ଯିବ, ତେଣେ ଫେର୍ ଠିକ୍ ପାଞ୍ଚଟାରେ
ସନ୍ଧ୍ୟା, ଅତଏବ ତିନଟାବେଳୁ ବାହାରିଲେସିନା ବେଳକୁ ଡେ
ଧରିବେ ! ଘୋଡ଼ାଟି ବେଢେବେଣ୍ଟରେ ସେ ଦକୋଶ ଛୁଡ଼ାଉଚ

ାଷ୍ଟଙ୍କୁ ଦ'ଘଣ୍ଟାରେ ହାକିମଙ୍କୁ ବୁଝାଇନେବ, କାରଣ ତା ପିଠିଉ-
ପରେ ସାହେବ ବସିଗଲାମାତ୍ରେ ପିଠୀଟି ଗୃହିଆଙ୍ଗୁଳ ଦବଯାଏ ।
ତେବେ ଦେଖ, ମୋଟେ ହାକିମଙ୍କୁ ତା ଏଣ୍ଣ ବାବତରେ ଘ ୮ ଣ୍ଟା କାମ
ଧ୍ୟେ ଜଲଦପୁର ବଦର ଫ ଏସଲ ଓ ଅମୀନ ନାମରେ ଫେର ଫେରାଦ
ଏସଲ ଓ ଅପୂର୍ବ ପଦାର୍ଥ ବା ପୁଗ୍ଗଡନଙ୍କାନ୍ତି ଦର୍ଶନ ପଶ୍ଚଦର୍ଶନ
ତ୍ୟାଦ ସରକାରୀ ଜ୍ୟୁଷ୍ଟୀସାଙ୍କ ଭନଘଣ୍ଟାନେବ । ଦୟାଲମୁନସରମ୍
ଏମଧ ଉପଦେଶଗୁଡ଼ାଏ ଦେଇଛନ୍ତି; ଠାଉଠୁରରେ ବଦର
ଜମାଖର୍ଚ୍ଚ ମଛାଣକରି ଜମାଅସୁଲଶୁନ୍ୟଷ୍ଟିମାନ କୌଶଳକ୍ରମେ
ଛଙ୍କୁ ପକାଇଦେବାର ବ୍ୟବସ୍ଥା ମଧ କରିଛନ୍ତି । ପେଷ୍କାରୀ କାମରେ
ତ୍ପୁତ୍ପନ୍ନମତିଷ୍ଟ ବନ୍ତୁ ଦରକାର, ଅର୍ଥାତ୍ ଘଡଘାଡ ଜଗି ଉସା
ରୁ 'ଆରମ୍ଭ କରି 'ମୌନଂ ସମ୍ମତିଲକ୍ଷଣଂ' ନୀତିଟି ପେଷ୍କାରର ପ୍ରଥମ
ଶିବାଷ୍ଟା ବର୍ଣ୍ଣପରିଚୟ ମଧ୍ୟରେ; ହାକିମ ଯେ'ମନ୍ତି ଚ'ର ଚ'ର
ଲମ ନଷ୍ଟାଣି ଗୋଷ୍ଟାଏ ପକ୍ଷଆଡକୁ ମାଡ଼ିଯାଏ ତାହାଙ୍କୁ ଲକ୍ଷରକ୍ଷ୍ୟ
ଷ୍ଟା ପ୍ରଥମ ପାଠମଧ୍ୟରେ । ଦୟାଲ ତେଉଁଆଣ୍ଣ ଗୋଛାଏ ପେଷ୍କାଣ୍ଣ
ଉଁଆନା ମଏ ସାଷ୍ଟିଫିକଷ୍ଟ ବଡକର୍ତ୍ତାଙ୍କ ଆଗେ ପେଷକରି ଏହିକାମ-
ରେ କୃତକାର୍ଯ୍ୟ ହୋଇଅଛନ୍ତି, ଏକଥାମଧ୍ୟଗେରିଧାରୀ ଶୁଣି ରଖିଲେ ।
ମିଭଲଆଙ୍କ ମୁହଁରୁ ସତକଥା ବାହାରିଆଏ ଯେ ଏ ଜମାଅସୁଲରୁ
ନ ଓ ତାଙ୍କପାଖ ସଭ୍ୟଗଣ ତେଳମାନ ସହିତଙ୍କର ଅର୍ଦ୍ଧେକ ଯାଇ
ଶୀ ଅର୍ଦ୍ଧେକ ବହାରଦେଶର ପ୍ରାପ୍ୟ ତଥା ମୁନସରମ୍‌ଙ୍କର । ମାହେ
୨୦ ରଙ୍କ ଡସମ୍ବର, ଜଲଦପୁରର ପ୍ରଥମ ବଦର ଫ ଏସଲ ତାରକ
ଇ ବଡସାହେବଙ୍କ ନାଜରବାବୁ ମୌଜମିଲନକସା ଦେଖି
ଗ୍ରାମ୍ ବାନ୍ଧି ସାହେବଙ୍କ ଦସ୍ତଖତରେ ଖାନାପୁରୀ ହାକମ ସାହେ-
କୁ ଯୋଗାଇ ଅଛନ୍ତି । କଲମୋଡଲ୍ଲୋକ ଜଣେ, ଏମାନେ ସବୁ
ନଙ୍କ ତଳାଗୋଷ୍ଟ ଏ ଲେଖାଁ ଏ କଲ, ଯେତେଦୂର ସମ୍ଭବ ପ୍ରୋଗ୍ରାମ୍‌କୁ
ତକଡ଼ା ମଧ୍ୟରେ ତନ୍ତବତ୍ ଗସ୍ତକର ପ ଏମାସ ଖସଡା ସାର-
ାକୁ ବାଧ୍ୟ । ସେ ଜଣେ ମୁହଁଷ୍ଟାଣ ହାକମ ଅଛନ୍ତି, ଧର୍ମ୍ମ ଓ କର୍ତ୍ତବ୍ୟ

ନିସ୍ତାକୁ'ଆଗନ୍ତର ପ୍ରୋଗ୍ରାମ୍‌ଟିକୁ ପଛରେ ରଖିଥାନ୍ତି, ତାଙ୍କ ପରମାୟୁ ସେହି
ଗୋଟିଏ ସନର ଶୀତକାଳ ଅଖରତକ୍, କାଳେ 'ନକ୍ସମା' ତଳେ ପ୍ରତ୍ୟା-
ଖ୍ୟାତ ହୁଅନ୍ତି ବୋଲି ଆମ ଏ ହାକିମ ପ୍ରୋଗ୍ରାମ୍‌ଟିକୁ ଅକ୍ଷରେ ଜଗି
ଥାନ୍ତି, ତଳେ ଆଗତସ୍ତ ମଧ୍ୟ ଦେଖାଇ ଦେଇଥାନ୍ତି, କାମ ତ
ଯେବେ ହେଉ ହେବ, କଉଯାହେବ ଜାଣନ୍ତୁ ତାଙ୍କ ମୁତାବକ ଠିକ୍
ସମ୍ଭବ, ଡେ଼ରାରେ ବୀଜି କାମ ହଏ ନକରେ ? ତା ୨୦ ରକ ମଙ୍ଗ-
ଳବାର, ଆଉ ମଝିରେ ଦନ୍ତିହାଏ, ତେନମାନଙ୍କ ଲେଖାପଢାକାମ
ହେଲେହେଁ ଆଜ ସେ ଲେଖାପଢିରେ ଲାଗି ପାଉନାହିଁ, ଅମୀନ ଗିର-
ଧାରୀ ମଧ୍ୟ ଆଜ ଦନଯାକ ମାପକୁ ନଯାଇ ବସାରେ ବସି 'ଦଦର'
ଦୋରସ୍ତୀ କାମ କରୁଚନ୍ତି; ବଡ ମୌଜାଟିଏ ବୋଲି ପ୍ରତି ହସ୍ତାରେ
ଅମୀନଙ୍କୁ 'ଦୋରସ୍ତୀ' ବାବତରେ ତନେ ମିଳେ, ଏହି ଦୋରସ୍ତୀ
ଦନମାନଙ୍କରୁ ଭିନଦନ ହାତରେ ଜମାଅଛି, ଆଜ ଦନ୍ଟାର ମାପ କାମ
ବନ୍ଦକଲେଇ ହେଲା, କେବଳ ତାଉକଟା ଶୁଦ୍ଧକରି ଲେଖିଲେଇ
ହେଲା, ଅର୍ଥାତ ପ୍ରକୃତ ତାରିକ ପ୍ରୋଗ୍ରାମ୍ ଅନୁଯାୟୀ ଗଡ଼ୁ, ଖସଡାରେ
ଦେଖାହେଉ, କାମ କେଉଁଦନ ବନ୍ଦ ତାହା ଜଣା ନଯାଉ । ସେତ ଦଣ
ଘଡ଼ିଯାଏ ଲାଗି ୨ ଓ ଗଣ୍ଡାଏ କଲମ ମୁଣ୍ଡାକରିବାରି ଗିରିଧାରୀ ଓ
ତେନମାନ୍ ଦହେଁ ପରସ୍ପର ସାହାଯ୍ୟକରି ନିମ୍ନଲିଖିତ ମତେ କାଗଜାତ
ମୁନସରିମ୍‌ଙ୍କ ଦଉପେଶ୍ ଲାଗି ବାନ୍ଧି ରଖିଲେ । ମୁନସରିମ୍‌ଙ୍କ ଯୁାଦଦାସ୍ତ
ଲାଗି ପୃଥକ୍ ଟିପା ଖଣ୍ଡିଏ ନିଜବାକସରେ ରଖିଲେ ଯେ ୪୨୫ ବଦର
୨୩୦ ବଦର୍ ବ୍ରା ଜମା ଗଏର ଅସୁଲକୁ ଟ ୨୭୫, ଓ ଅସୁଲ ଟ୭୨୫
୫୦ ମୋଟ ପାଉଣା ଏକରେ ଭନଶୂନ୍ । ଇତି ସିରସ୍ତା ପର୍ବଂ—

## ୭ମ ଅଧ୍ୟାୟ ।

### ଓଡିଶା ଅମୀନସଂଶୋଧନୀ ସଭା ।

ଗତ ନଭେମ୍ବରମାସ ତା ୨୦ ରକ ଶନିବାର । ସ୍ଥାନ ଗଞ୍ଜାମ
ଜିଲ୍ଲା କଣଇ ଭୁତକୋଠା ଓରଫ ବନ୍ଦବସ୍ତହାକିମବଙ୍ଗଳାମଧ୍ୟସ୍ଥ
ଦସ୍ତୁର କାମଡା । ଉପସ୍ଥାନ, ଅମୀନସଂଶୋଧନୀ କନଫରେନ୍ସ

ଣ୍ୟବ୍ରନ୍ଦଃ ମହାମାନ୍ୟ ପ୍ରାଦେଶିକବନ୍ଦବସ୍ତ କର୍ତ୍ତା ମିଃ ଡ଼ଃ ଅହେମା
ସ୍ୱାପଢ,ମହାମାନ୍ୟ ଓଡ଼ିଶା ବନ୍ଦବସ୍ତ କର୍ତ୍ତା ଇଃ ଜଃ ମେଡ୍ଗୁ,ଗ୍ରସ୍ୱବାହା-
ଦୁର ସମ୍ପାଦକ, ଶ୍ରୀଯୁକ୍ତ ପି.ପି.ସ୍ୱସ୍ୱସାହେବ (ଶାଉସ୍ୱିକ ଖାସ ଅସିଷ୍ଟାଣ୍ଟ)
ହକାରୀ ସେକ୍ରେଟରୀ, ଲୋକମାନ୍ୟ ଶ୍ରୀଠାକୁର ରାଜାଙ୍କ ମାନେଜର
ମାନ୍ୟବର ବୋଷସାହେବ ଜମିଦାର, ଓ ଦ୍ୱାଦଶସଂଖ୍ୟକ ଏ,
ସ୍ ଓ ଓଉଫଚ୍ଛେଟ ସାହେବ,ସଭ୍ୟଗଣ, ମୋଟ ସପ୍ତଦଶସଂଖ୍ୟକ। ବିଷୟ
ଜ ସନର କାର୍ଯ୍ୟାବଳୀଦୃଷ୍ଟେ ସ୍ଥିରକରାଯାଇଅଛି ଯେ, ଓଡ଼ିଆ
ମୀନ ଓ ମୁନସରିମ୍ମାନେ ବିଶେଷ ଘୁସ୍‌ଖୋର ଓ ଅତ୍ୟାଚ୍ଛୀ
ହଲେ, ସେମାନଙ୍କ କାର୍ଯ୍ୟ ଅପଟୁତା ଦୂରୀକରଣାର୍ଥ ପ୍ରତ୍ୟେକ ହାଲ-
ମଧ୍ୟରେ ଅର୍ଦ୍ଧସଂଖ୍ୟକ ବିହାରୀଲୋକଙ୍କୁ ଖାପରେଲଖର୍ଗା ଦେଇ
ଯୁକ୍ତକରି ଅଣାଯାଇଅଛି; ସ୍ୱତନ୍ତ୍ରହାଲସନର ଖାନାପୁରୀରେ ପ୍ରତ୍ୟେକ
ଡ଼ିଆ-ବିହାରୀଙ୍କ ଦ୍ୱାରା କୌଣସି ଉତ୍କୋଚ ସମ୍ପର୍କୀୟ ନଥିହୋଇ
ପାରେ ଏଥିର କି ଉପାୟ ନିର୍ଦ୍ଧାରଣ ଆଶୁ ପ୍ରସ୍ତୁତ କରା କର୍ତ୍ତବ୍ୟ
ହା ସ୍ଥିର କରା ଅଭିପ୍ରାୟରେ ସରକାରୀ ଓ ବେସରକାରୀ ପୁରୁଷ-
ହମାନଙ୍କର ବୈଠକ କରାଯାଉ । ଏହି ବୈଠକର ସଭ୍ୟଙ୍କମଧ୍ୟରେ
ଧାରଣ ଉତ୍କଳୀୟମାନଙ୍କୁ ସ୍ଥାନ ଦିଆଯାଉନାହିଁ, କାରଣ ଏହାର
ର୍ଦ୍ଧାରଣଗୁଡ଼ିକ ଅତି ଗୋପନୀୟଭାବେ କରାଯିବ, ଅପିଚ ତାଙ୍କ ଭଲ
ପୁଭୁରାଙ୍କର ଦାନାଉପରେ ଧୂଳିପଡ଼ିବ, ଏହା ସେମାନଙ୍କୁ ବଡ଼ ଲଜ୍ଜା-
ଜନକ ଓ କଷ୍ଟକର ହେବ ।

ସେକ୍ରେଟରୀଙ୍କଦ୍ୱାରା ସମ୍ପାଦକ ସାହେବଙ୍କକୃତ ଶ୍ରେଣୀ ୧ ମୁଦ୍ରିତ
ାହି ଏଥର ବଣ୍ଟା ହେବାପରେ, ଫଃ ସାହେବ ମହୋଦୟ କହେ
ାଗକଲେ, ଯଥାଃ- ଆଜ୍ଞା, ମୁଁ ଜାଣିବାକୁ ଚାହେଁ ଯେ ଉତ୍କୋଚ
ରେ କେଉଁ ୨ ପ୍ରକାରର ଅର୍ଜନ ଧର୍ତ୍ତବ୍ୟହେବ । ଅମ୍ଭେ ଶୁଣୁଁ ଯେ
ଦେଶରେ 'ବେକ୍ରଗାର' ଓ 'ଉପରିପାଉଣା'ମାନ ଘୁଷ୍‌ମଧ୍ୟରେ ନୁହେଁ।
, ତାହା ୧ । ପ୍ରଜାମାନେ ଇଚ୍ଛାକରି ଦିଅନ୍ତି ନା ତାଙ୍କ ଉପରେ
ରହସ୍ତୀ ହୁଏ ?

୨ ଅମୀନ ଇଚ୍ଛାକର ନଥିନ୍ତି ନା ତାଙ୍କଉପରେ ବାଧ୍ୟତା ଘଟେ ?
୩ (କ) ପ୍ରଜାମାନେ ଜାହକ ଦିଥିନ୍ତି ? ଓ (ଖ) ଯେଉଁ ମ
ଲବରେ ଦିଅନ୍ତି ତାହା ପାଆନ୍ତି କି ନାହିଁ ?
୪ (କ) ଅମୀନମାନେ କାହିଁକି ନଥନ୍ତି ? ଓ (ଖ) ଯେଉଁ ଅର୍ଥ
ନଥନ୍ତି ତାହା ପାଳନ କରନ୍ତି କି ନାହିଁ ?
୫ (କ) ଉପରିସ୍ଥ କର୍ମଚାରିମାନେ ତାହା ଧରି ବା ଦେଖିପାରନ୍ତି
ନାହିଁ ? (ଖ) କାହିଁକି ଦେଖି ବା ଧରି ନପାରନ୍ତି ?
୬--ଦେବାନେବା ପ୍ରଥା ବନ୍ଦହେଲେ କେଉଁ ପକ୍ଷର ଅସୁବିଧା କା
ହେବ କି ନାହିଁ ? ଇତି ।

ଆହୁରି କହିଲେ କି ବକ୍ତା ଏହି କ୍ରମରେ ଉତ୍ତରସ୍ୱରୂପ
କର୍ତ୍ତବ୍ୟକୁ କହିଗଲେ ସମସ୍ତଙ୍କର ବୁଝିବାକୁ ସୁବିଧା ହେବ,ଓ ସଭାପ
ମହୋଦୟଙ୍କୁ ମଧ୍ୟ ନିଷ୍ପତ୍ତି କରି ଶେଷଆଦେଶ ଦେବାକୁ ସହଜ ହେ
ମିଷ୍ଟର ବୋସ୍ ଜମୀଦାର ଯୁବକରୁ ଏ ପ୍ରକାରର ଅନେକ କଳଙ୍କ
ନ୍ତରେ ଯୋଗଦେଇ ଅଛିଛନ୍ତି ଓ ଘୁଷ୍ନେବାଦେବା ବିଷୟ
ତନ୍ନ୍ନକର ବିଶ୍ଲେଷଣ କରିଅଛନ୍ତି । ତାଙ୍କ ନଜର ମସ୍ତ ବଡ ସିର
କୋଡ଼ପଡ ଓ ଦେଶର ରାଜା, ଉପ୍ପୋବୃନ୍ଦ ଓ କଲ୍ଷତର ଘଟ
ତାଙ୍କ ଘରେ ସାଧାରଣ ପ୍ରଚଳତ । ନିର୍ଭୀକଭାବେ ବକ୍ତବ୍ୟ ପ୍ରକ
କର କହିଲେ ( ଇଂରାଜୀ ବକ୍ତୃତାର ମର୍ମ ):—

ମହୋଦୟଗଣ, ମାନ୍ୟବର ବନ୍ଦବସ୍ତ କର୍ତ୍ତାଙ୍କ ପ୍ରଶ୍ନାବଳୀର ବି
କ୍ୟାଖ୍ୟା ଓ ଉତ୍ତରଦାନ କରା ବାହୁଲ୍ୟ । ପ୍ରଥମେ କେତୋଟି
ଷୟ ପ୍ରମାଣ ବା ସ୍ୱତଃସିଦ୍ଧ ତତ୍ତ୍ୱକୁ ସ୍ମରଣ ରଖାଯାଉ ।—୧ମ ପ୍ର
ଏହିଯେ, ଦେବାନେବା ଟଙ୍କାଗୁଡ଼ିକ ଭାରତମହାଦେଶର ବାହା
ନ ଯାଇ ଆପଣାଦେଶରେ ଏଗାଡରୁ ଯାଇ ସେ ଗାଡରେ ରହୁ
୨ୟ ପ୍ରମାଣ ଏହିଯେ ଗରିବ ପ୍ରଜାର ମୂଲଟି ସର୍ବପ୍ରଧାନ ସ
ଜନେ ମୂଲ ନ ଅଣିଲେ ବା ଦିନେ ନିଜ ଜମିବାଡ଼ିର କାମରୁ

ହଲେ ତାହାପରିବାରବର୍ଗଙ୍କର ତାରଦିନ ଉପବାସ ରହିବାର
ାଟ ସେ ଅପେକ୍ଷ କଲ । ୩ୟ ପ୍ରମାଣ ଏହି ଯେ, ପିମ୍ପୁଡ଼ିକୁ ଫାଫଣ୍ଡୁଣୀ
ପରେ ଉଡାଇଦେଲେ ସେ ସ୍ୱର୍ଗରେ ଚଢିଛି ବୋଲି ମନେ କରିନଏ ।
ର୍ଥ ପ୍ରମାଣ ଏହି ଯେ, ସରକାର ବାହାଦୂରଙ୍କର ମାଛ ଧରିଙ୍କି କାଦେଇ
ଣୀ ପୋଷନ୍ତି । ୫ମ ପ୍ରମାଣ ଏହି ଯେ, ବୈଜ୍ଞାନିକ କ୍ରିୟାଦ୍ୱାରା ପ୍ରଜାର
ଦ ଦାରିଦ୍ର ଖବରଟି ସ୍ୱଦ୍ଧା ଖୋଦ୍ କର୍ତ୍ତାଙ୍କ କଚେରୀ କାମରା ମଧ୍ୟରେ
ଶିତ ହେଉଛି । ୬ଷ୍ଠ ପ୍ରମାଣ ଏହିଯେ, ଜୋର ଯାର ମୁଲକ ତା'ର ।
ପ୍ରମାଣ ଏହି ଯେ, ପ୍ରଜା ଜମୀଦାରଙ୍କ ସମ୍ବନ୍ଧ ବଡ଼ାର ମୂଷା ବସ୍ତ-
ଙ୍କ ଦିସ୍ତା ।

ଅକ୍ଟୋବର ମାସଠାରୁ ମାର୍ଚ୍ଚ ମାସଯାଏ ଛଅଟି ଯାକ ମାସ ପ୍ରଜାପାଇଁ
ଜନଉପାୟ ସଙ୍କଟର ସମୟ, ଅଥଚ ଚେଣେ, ବଳରେ ବୁଦ୍ଧି କାମ
ର୍ଯ୍ୟ କରିବା ବା ଇୟୁରୋପୀୟ ପୁରୁଷମାନଙ୍କର ମସ୍ତିଷ୍କ କାର୍ଯ୍ୟକରିବା
ରେ ଏହି ଛଅଟି ମାସ ଦୃଷ୍ଟ ହୋଇଅଛି । କାମ ସାରିବାପାଇଁ ଉଦୟ
ଚଉବର । ପ୍ରଜାର ଧାନ ପାଚିନାହିଁ, ଅମୀନ ଅସି ଜଞ୍ଜିର ଓଟା-
ଲ; ପ୍ରଜାର ଧାନ କଟାନହୋଇ ଉଜୁଡ଼ିଯାଉଛି, ଅମୀନ ସାଙ୍ଗେ
ପରଦିନ ଦୌଡ଼ିବାକୁ ବାଧ୍ୟ; ଜ୍ୱରଆଦି ବଳ-ଓଜକ୍ଷୟକାରୀ
ଗରେ ପରିବାର ତମାମ୍ ମରମର ଅବସ୍ଥା, ଔଷଧ ଟିକିଏ ମିଳିବା
ରି, ଘରେ ରୋଗୀର ଅଣନିଶ୍ୱାସ ବୋହିଲାଣି, ପ୍ରଜାର ସାଧନାହିଁ
ନିପାଖରୁ ଅନ୍ତର ରହିବ ବୋଲି; ଏବମ୍ଭୂତ ଅବସ୍ଥାରେ ପଡ଼ିଥିଲେ
ଶୀପୁରୁଷ ମଧ୍ୟ ନିଜ ସହ୍ୟନିଷ୍ଠା ବା ଧର୍ମବିବେକ ଛାଡ଼ି ଯେ
ଣିମତେ ବିଦାଏଟା କଣିବାକୁ ଅଗ୍ରସର ନ ହେବେକି ? ସୁତରାଂ
ପଛକେ ମାଇପହାତରୁ ଖଡୁ, ପେଟ ପାଇଁ କମାଇରୁ କଟକି
ପାଇବ ପ୍ରଜା ନିଜ କର୍ମଦେବଙ୍କୁ ଏହି ପ୍ରାର୍ଥନା କରିଥାଏଟି ?
ଦେଶ ଗ୍ରାମ ଜାତି ପଦ ପ୍ରାପ୍ତ ଏଣ୍ଟା, ଉଚ୍ଚଳୀୟ ଅମୀନ ଯେବେ
ପାଇ ଟଙ୍କାଟିଏ ଉପରି ଅର୍ଜ୍ଜନ କରିପାରେ, ଖହଣହକୋପ

ଦୂରଦେଶର ଅପରିଚିତ ଜାତି ପଢର 'ଖୋଟ୍ଟାଅମୀନ' ଠିକ୍ ସେହି
ସୁବିଧା ପାଇଲେ କେତେଟଙ୍କାରେ ବୋଧହେବ କହିଲ ? ତା ଉପରେ
ଫେରତାଲୁ ଆହୁରି କେତେଗୁଡ଼ଏ ସୁବିଧାଦିଆଅଛି;ଯଥା,"'ତାଲୁ ଦେଖି
ନ ପାରି ଓଡ଼ିଆମାଙ୍କର ଦ୍ୱେଷବହ୍ନିଜଳେ' ବୋଲି ମିଥ୍ୟାରଟନାରେ
ତାହାର ଅନଷ୍ଟ କରିବାର ଚେଷ୍ଟା ହେଉଚି" ଏ କୈଫିୟତଟି କର୍ତ୍ତୃ
ହୃଦୟରେ ଦୃଢ଼ବିଶ୍ୱାସ ରହିଥାଏ ଯେ କଷ୍ଟପୂ୵ ସତ୍ୟ"। ୧୩୦
ବନ୍ଦବସ୍ତବେଳର ବାର ହାଣ୍ଡିଆଙ୍କ ଗୀତ ଆଜଯାଏ ଉଡ଼ିଆ ପିଲା
ଷ୍ଟଶାଳୀରେ ଶିଖନ୍ତି—ପଚଶଟା ଟଙ୍କା ଦରମ୍ହା ପାଇଁ କଣ ସେମାନେ
ସାତସମୁଦ୍ର ତେର ନଦୀ ପାରିହୋଇ ଆସିଛନ୍ତି? । ଡାକଘରର ବହି
ଦେଖାଯାଇ ପାରିବ ଖୋଟ୍ଟାଙ୍କର କେଉଁ ଜିଲାର କେଉଁ ଡାକଘର
ଓଡ଼ିଶାରୁ ମନିଅର୍ଡ଼ର କେତେଯାଏ ? ଓଡ଼ିଆ ଅମୀନ ପଞ୍ଚାଲଗଣ୍ଡା
ପାଇଲେ ଯେବେ ବୋଧପାଏ,ଆଉଜାତିଆ ଅମୀନ ରୁଟି ମାଉଁସଖିଆ
ସେ ଅତିଥିହେଲେ ତାଙ୍କୁ କଣ ଦେବା ଉଚିତ ? ସରକାର ବାହାଦୂର
ତଦାରଖକଲା ଲୋକଙ୍କୁ ମୋଟା଼ ବେତନ ଦେଇ ଜଣକେ ଗୋଟିଏ
ସର୍କଲ ବାନ୍ଧିଦେଇ ଦେଲେ ଯେ, ବାରଜଣ ଅମୀନ ଯାହା କରନ୍ତି
ତାହା ଜଣେ ଟ ୫୦୯ ପାଇଲା ମୁନସରମ ଜଗିରହିବ, ଦଶଜଣ
ମୁନସରିମ୍‌ଙ୍କ ଦଶୋଟି ସର୍କଲ ଜଗିଥିବା କାମଉପରେ କାନୁନଗୋ
ଗୋଟିଏ ଟ ୧୦୦୯ ପାଇକରି ଅଛି; ଲୋକଙ୍କ ଗୃହାଗ୍ନି ଶୁଣି ସଫାଇ
ଦେଉଥିଲେ ପଛକୁ ଭଉକାମ ପଡ଼ିବନାହିଁ । ଏହିପରି଼ ବନ୍ଦୋବସ୍ତରୁ
କେତେ ବେତନ ଦିଆହେଲା ଟିକିଏ ହିସାବକରି ଦେଖନ୍ତୁ । ଅ
ଉପରକୁ ଥିବା ତଦାରଖକାରୀମାନେ ପ୍ରକୃତ ତଦାରଖକାର୍ଯ୍ୟକରି ଥା
ଓ କେବଳ ବାଘର 'ଭଜ'ଦେଖାଇ ଥାନା ଗୋଟାକର କାଗଜ ଗୁରିମା
ମଧ୍ୟରେ କରି ଦେବାକୁ ବାଧ୍ୟଥିଅନ୍ତି, ତାଙ୍କମାନଙ୍କର ଏହି ଜନପଦ
ନସ ବଷପୂ ସହିତ କୃତକ ସମ୍ବନ୍ଧଅଛି । ବଳଦଆ ହିସାବଟାଏ ଧରନ୍ତୁ
ମୌଜାଟିଏ ହାସ୍ତହାସ୍ତ ୧୦୦୦ ପ୍ଲଟକୁ ଜଣେ ଅମୀନ + ଜଣେ

ମାନ୍ ଛମାସ(୬ × ୪୯ଟଙ୍କା) ଟ୨୪୦୯ ହାଲକା ଗୋଟିକେ ମୌ୨୦-
ନାଲୁ ଟ୪୮୦୦୯,ଓ ଜଣେ ସୁପରଭାଇଜରର ଟ୫୦୯ × ୬=୩୦୦୯
୦ଟ୫୧୦୦୯ । ଦଶଟି ହାଲକାରେ ସର୍କଲ,ଜଣେ ବଦର କାନୁଗୋଇ
ସାହେବ ଟ୧୩୦୯ × ୬= ଟ୭୮୦ ଗାଏ ଟ୫୧୬୮୦୯ଲୁ ମୌଜା
୨୦୦ = ୨୦୦୦୦୦ ପ୍ଲଟ, ÷ ପ୍ରଜା ଜଣକେ ୫ପ୍ଲଟ, =
୪୦୦୯୦ ପ୍ରଜାଙ୍କ ଖସଡ଼ା ନକସା ଖଣ୍ଡିଆନ ତୟାର କରୁଚନ୍ତି ଏହ
ଟ୫୨୦୦୦୯ରେ । ପୂର୍ବ୨ କାର୍ଯ୍ୟର ଇତିହାସଦୃଷ୍ଟେ ଯଦ ଶିକ୍ଷିତ ଓ
ସ୍ଥ ଯୁବକ ରଖାଯାଏ 'କାନୁଗୋ', ଯେକି ନଜେ ଜରିପ ଓ ଖସଡ଼ା-
ରବେ,ଯେ ଅମୀନ ଦୁଜଣ ସଙ୍ଗେନେଇ ସେହି ଛମାସରେ (ଜାନୁ-
ଆରିଠାରୁ ଜୁନ ଯାଏ ବେଶ୍ କାମ ହୋଇପାରବ ) ଦନକେ ନକୁଛ
୦୦ପ୍ଲଟ କର ସୁଦ୍ଧା, ୧୮୦୦୦ପ୍ଲଟ ବା ୩୬୦୦ ପ୍ରଜା କର ରଖି-
ବେ । ∴୪୦୦୦୦୯ପ୍ରଜାଙ୍କ ବା ୨ଲକ୍ଷ ଖସଡ଼ାପାଇଁ ୧୧ଜଣ କାନୁ-
ଗୋଇ ଓ ୨୨ଜଣ ଅମୀନ ଓ ୨୨ଜଣ ଚେନମାନ୍ ଛମାସ ଦରକାର ।
ଥିକ (ଟ୧୩୦ + ଟ୮୦) × ୪୧୧ × ମାସ୬ -ଭୁଲଭାଲ ଶକାଶେ ଧର-
ଯୁ; =ଟ୪୨୦୦୦୯ ହେଲେ ଯୁଗବୃତ୍ତ । ଚେବେସୁଦ୍ଧା ଦଶହଜାର
ଜାର ବାହାଦୁରଙ୍କ ଲାଭ । ଅଥଚ କାମଚଳନ୍ତା ଧୀରସ୍ଥିରସ୍ତେ,ବହନ୍ତା
ସେହ୍,ଓ ଘୁସଖାସ୍ 'ଦେଖଇଁନେପାଇଁ'ସବୁଅଛିକମିଯାନ୍ତା । ବଡଜୋର
ପାଏ ଯେଟକୁ, ରସଦ ଦେବା ଲାଗି ଓଡ଼ଆପ୍ରଜାପୁଅ ଭାର ଖୁସୀ :
ରୁ ତାଙ୍କର ଉଖାସ୍ତି ଫେରନ୍ତି ନାହିଁ । ଇତ୍ୟାଦ୨ କହି ଶେଷରେ
ୟର ବୋଷ କହିଲେ ଯେ ୧୩୦୪ ବନ୍ଦବସ୍ତରେ ଦଗା ପାଇଲାରୁ
ଚଉଦବର୍ଷମଧ୍ୟରେ ଅଧିକାଂଶ ଜମିଦାର ନିଜ୨ ଇଲାକାର ଖସଡ଼ା-
ନ୍ୟାନ୍ଲୁ ଦାଖଲଖାରଜକରି ଏକପ୍ରକାର ରକ୍ଷା କରନ୍ତି,ତାଙ୍କୁ ବିଶ୍ୱାସ
କିବାରେ କ୍ଷତି କଛି ନାହିଁ ଲାଭ ଢେର । କାନୁଗୋଇ ସାହେବ
ହି କାଗଜଉପରେ କାମ ଚଳାଇଦେଲେ ଅଧାଖର୍ଚ୍ଚରେ ବ ସାର-
ନ୍ତେ, ଓ ପ୍ରଜା ବିଚରା ଏ ଜମୀଦାର ଅଣ୍ଟପୃରେ ଖଡ୍ଗ ବଞ୍ଚିବାରୁ

ରିହାଏତ ହେଥିଲେ । ବିଶ୍ୱାସିହି ମୂଳ, ସ୍ୱରାଜୀଙ୍କ ଚେଷ୍ଟାରେ ସେ
ବିଶ୍ୱାସ ଛାଡ଼ପଳାଉଛି । ଏବେ ଅମୀନହେବା ସହଜ, ଚନ୍ଦ୍ରପୂଜାଥିଲେ
ହେଲା ।

ମିଷ୍ଟର ବୋଷ୍ କନୁ କର୍ତ୍ତାମାନଙ୍କୁ ଅର୍ଥାତ୍ ବୁଢ଼ାକର୍ତ୍ତା ଓ ବଡ଼କର୍ତ୍ତା
ଓ ସାନକର୍ତ୍ତା ଗୁଡ଼ାଙ୍କୁ ସନ୍ତୁଷ୍ଟକରି ପାରିଲେନାହିଁ ଯେ ଏପରି ପରିବ-
ର୍ତ୍ତନ ହେବା ସମ୍ଭବପର କି ?' । ଏ'ତ ସାମାନ୍ୟ ପରିବର୍ତ୍ତନ ନୁହେଁ
ଏ ସରକାର ବାହାଦୂରଙ୍କ ମୂଳନୀତିର ଯୁଗାନ୍ତର, 'ସ୍ୱରାଜ'ଠାରୁ ବ
ସ୍ୱାଧୀନତା ଦାୟୀ । ଏହାଙ୍କମତରେ ଗୋଟା ଜାତଯୁ ପ୍ରଥମ ଓ ଦ୍ୱିତୀ
କର୍ତ୍ତାଙ୍କୁ ମାଡ଼ଠାରୁ କୁଳମାସଯାଏ ଖଟରେ ଶର୍ଦ୍ଦିଗମୀ ଆୟୁହାନର ଉ
ଛୁଅନ୍ତା; କନୁ ଦରକାର କଣ ? ସ୍ୱର୍ଗରୁ ନ ଓହ୍ଲାଇ ଖେଳୁଥା ସା
କର୍ତ୍ତାଙ୍କୁ ତ ପାଗଲୁ ଡକାଇ ନିଅନ୍ତେ ଓ ତାଙ୍କୁ ଘୋଡ଼ା ସାଇକଲ ପରି
କର୍ତ୍ତେ ସୁଆସୀରେ ଗସ୍ତର ବ୍ୟସ୍ଥ ଯୋଗାଇ ଦିଅନ୍ତେ, ତେବେ ନଜର
ମଫସଲ ଭିଦାଇଙ୍କ ଆଦୌ କରିବାକୁ ପଡ଼ନ୍ତା ନାହିଁ । ମିଷ୍ଟର ବୋଷ
କଥା ଗୁଡ଼ାକ ଶୀଘ୍ର ବହୁ୍ୟହ୍‌ବହ ମୁନସରମ୍ ଓ ଅମୀନ କନଫରେ
ସମିତରେ ଆଲୋଚନ ହୋଇଥିବ । କାରଣ ବଡ଼ସାହେବନ୍ତ ସାହେ
ଜାଇ, କାଲେ ବୋଷଙ୍କ ଏ ଅଡ଼ୁଆ ଅଣ୍ଟି କହିଯାନ୍ତୁ । 'ବୋସ ସା
ବୁଙ୍କପାଇଁ ସନ୍ନ୍ୟାବଳତା ଉଠାଇ କଲ୍ୟାଣକରୁ ଇଶ୍ୱର' ଏହା
ଗୋଟିଏ ସର୍କୁଲାର ଏମାନଙ୍କର ଆପଣା ଗୃହଦେବୀମାନଙ୍କ କ
ବାହାର ଗଲଣି । ଯେ ଯାହା ପାଉଛୁ ଦରଣ୍ଡି ସମ୍ପିପୋଛୁ ଯାଉ
କାଲେ ପ୍ରଚଳନ ବହାସ ମୁନସରମ୍ ବନ୍ଦୋବସ୍ତର ହୁଦାଏଦ ଉଠିଯା
ମିଃ ବୋଷଙ୍କୁତ ଅପରତନ ଉଡ଼ସ୍ୱା-ପାସବାଲକାନୁଗୋଇ-ଜ
ବନ୍ଦୋବସ୍ତର ହୁଦାଏଦ ଯାସ୍ୱ ହୋଇ ଯାଏ । ତେଣେ ପ୍ର
ମାନେ ଜଲଦପୁରରେ ଏପରି ପ୍ରସ୍ତାବର ନାମଗନ୍ଧ ଜାଣି ନଥିବା
ସେ ଉଡ଼ା ଶୁଣିଲେଣି ଯେ ମୁନସରିମ୍ ବାବୁ ହେବେ 'କାନୁନଗୋ
ଓ ଅମୀନବାବୁ ହେବେ 'ଅଧିଷ୍ଟେଣ୍ଟ କାନୁନଗୋଇ,' ଅର୍ଥାତ୍ ଯେ କ
ନାସିକ ସେଇ' ବଦର କରିବେ ଓ ସେ ନଜେ ବଦର ମଧ୍ୟ ଫଏ

ରିବେ" । ଏବଯାଏ ଯାହା ଝଙ୍କଏ 'ଲୁପର ଗୁହାଙ୍କ' ବୋଲି କଣ୍ଠାସଞ୍ଚ
ଲ ସେ କଣ୍ଠାସଞ୍ଚ ଗଲା । ହାକିମ କଲୁ ଅଛନ୍ତି; ସବୁ ହାକିମର ସମାନ
ନ୍ତି ! ଆମ ଜଳପୁର ଯାହାଙ୍କ ସର୍କଲରେ ତାଙ୍କ ବଦରଫ ଏସଲକା-
ହାକୁ ପ୍ରଭାଏ ଦେଖି ଅବାକ୍ ଅଛନ୍ତି । ସେ ଦନର ଉକଦଣ୍ଡାରେ ୬୬୫ଟି
ଦର ଲାଗି ଶତକରା ଏକପୃଷ୍ଠା ହିସାବ ଦୁଇଟି ପୃଷ୍ଠାରେ ରାଏ
ଲେଖିଯାଇଛନ୍ତି । ଏ ରାଏ'କୁ ପଡି ତାମିଲକରା ଅମୀନ ମୁନସଫିଙ୍କୁ
ଶ୍ରେ'ସ୍ତା ଲାଗିନଥିଲା " ହୁକୁମ ଜାଏମ୍ " ! କେବଳ ଜମୀଦାର-
ଙ୍କ ବଦରଗୁଡ଼ିକ ଆଉ ଚାରିଖିଲୁ ରହିଅଛି, କାରଣ ନୂଆ
ଦେଶୀ ହାକିମ, ଟାଣୁଆ ଜମୀଦାରଙ୍କ ଟାଣୁଆ ମାନେଜରଙ୍କର ଉପର
ତାକୁ ନିମନ୍ତ୍ରଣ ପାଇଛନ୍ତି । ସାହେବମାନେ ଆସି ଶିଖାଇଛନ୍ତି ଯେ
ବା ଡିନରଭୋଜଟି ସଭ୍ୟ ଶିକ୍ଷାମନ୍ଦର, କିନ୍ତୁ' କଥାସବୁ ଏହିଠାରେ
ଠାଥିବା ବେଳେ ଚର୍କଚାର୍କଙ୍କର ଫଏସଲର ବାଟ ସ୍ଥିରକର ଯାଉଛି !
ମାନେ ରକ୍ତରେ ସାହେବ ନ ହେଲେ କଣ' ହେଲା, ସାହେବ'ତ !
ରଣୀଡେଣେ ବ୍ରାହ୍ମଣଠାକୁରକୁ ରଖି ବ୍ରତପୂଜା ଓ ଆହାର କରୁଥାନ୍ତୁ
ଙ୍କେ, ତାହାର କୌଣସି ବୈଠକବେଳକୁ ସେ ତାଙ୍କ ସାହେବଙ୍କ
ଗେ' ମେମ୍ସାହେବ ହୋଇ ନ ଗ୍ଭଲଲେ, ମୁଣ୍ଡରୁ ଖୋଷାବାଳକୁ
ଙ୍କୁ ଦାନ କରଦେଇ ଖଲାସ ପାଆନ୍ତୁ ନା ? ଆମ ଏ ବଦଳସ୍ତାହାକିମ
ଠାକୁର ମାନେଜର ବ୍ରାହ୍ମଣଠାକୁରରଖା ସାହେବଯୋଡ଼ାଏ
! । ଏ ବଦରୁ ତାରିକଦନ ବେଲହେଲା ନାହିଁ ? ମୁନସଭମ ମିର୍ଯ୍ୟାଙ୍କ
ଖଉରେ ଅମୀନ ଗେଣ୍ଡାଧାଣ୍ଡି ନାମରେ ଓ ଗିରିଧାରୀ ଦସ୍ତଖତରେ
ଖରମ୍ ନାମରେ ଓ ମାନଙ୍କା ଦସ୍ତଖତରେ ଦୁହିଙ୍କ ନାମରେ କଣ୍ଡିଏ'
ରି ଉକଦସମର ନଅଖଣ୍ଡି ଦରଖାସ୍ତ ଗଡ଼କର୍ତ୍ତା ଓ ସାକାକର୍ତ୍ତା ଓ
ଲଟରିମାନେଯାଇ ଶେଷ ଫଏସଲା ଅଦେଖ ପହୁଞ୍ଚ ଭିସାଲ
ଦେଇଚନ୍ତି ଯେ ସବୁଯାକ ଆମ ଏ ହାକିମ ସାହେବଙ୍କ ପକେଟରେ
ଦପୁର କଚେରୀଠାକୁ ଅଧିକ । ଏହିକଥା ଦସ୍ତୁର କରୁ' ଏମାଆଜ

ଯାଚେ ଚାରିଟା ବାଢ଼ଗଲା । ପୁଲିସ ଚୋରି, ଡାକେ୨ ଏ ମକଦମାର
ଅନୁସନ୍ଧାନ ଓ ପ୍ରମାଣସଂଗ୍ରହକାର୍ଯ୍ୟ ଦ୍ୱିଗୁଣ ବାଡ଼ିକଲୁ ଗଡ଼ିଗଲା ।

ଅମୀନ ସଂଶୋଧନୀର ନିର୍ଦ୍ଧାରଣ ବଡ଼ ଗୁପ୍ତଭାବେ ରହିଛି । ତେବେ ଉଡ଼ନ୍ତା ଖବରଙ୍କ ମୁହଁରୁ ମଫସଲଲୋକେ ଶୁଣିଯାଇଚନ୍ତି କି, ହାକିମ ଯେବେ ଧରିବ ତେବେ ପ୍ରଜାଙ୍କୁ ତାଙ୍କମାନଙ୍କ ଦେଇଥିବା ଅର୍ଥ ଯୋଗ ଓ ପାପ ନମିଳ ସେହି ଟଙ୍କାରେ ମୌଜାମଧ୍ୟରେ କିଛି ଗୋଟାଏ କୀର୍ତ୍ତିସ୍ତମ୍ଭ କରାଇ ଦିଆଯିବ; ଯେମନ୍ତି କି ସେ ଅମୀନ ଓ ମୁନସଇମଙ୍କ ନାଁଅ ଦଉଛି ଗାଁଅରୁ ଲୁଚ ନ ଯାଏ । ଏଣ୍ଡ ଇନ୍ଦ୍ରସଭା ପର୍ବ୍ବ

## ୮ମ ଅଧ୍ୟାୟ ।

—o—

ପଛବୁଦ୍ଧିଯୁ ଜାଢ଼ କିଏ ।

ଜଲଦପୁର ମୌଜାଟି ବଡ଼ ଭଣ୍ଡିକଣ୍ଠା ମୌଜା ଜାଣିଚ; ଚାରିସାଲ ବନ୍ଦ, ରିହଜନ ବନ୍ଦ, ବା ମୋଫସ୍ୱା ମେଣ୍ଟନାନ୍ସ ବନ୍ଦବସ୍ତ ବନ୍ଦ, ସବୁଥିରେ ଅମୀନମୁନସରିମ୍ ଏଠି ଦାଗପାଇ ଯାଇଚନ୍ତି । ବିଚାରା ଗିର୍ଦ୍ଧ-ଧାରୀ ରସରସିଯୁ ବଡ଼ ମୌଜାଦେଖି ଲାଳାୟିତ ହେବାରୁ ସଦର ଅଫିସ ସୁପରଭାଇଜରବାବୁଙ୍କୁ ଫୁଲ ବେଲପତ୍ରୀ ଚଢ଼ାଇବାର ଫଳ ପାଇଥିଲା । ଉମେଦବାରିକାଲେ ଗାଁଅ ଅବଧାନ ଜାତକ ଦେଖି କହି-ଥିଲା "ଶତ୍ରୁ ଘେରିବେ କିନ୍ତୁ କିଛି କରିପାରିବେ ନାହିଁ"; ଗ୍ରାମକୁ ଜଲଦପୁରକୁ ଅନୁକୂଳ କଲ୍ପଦିନ ମଧ୍ୟ ତାହା ତାହାଣଅଛି ଦେଇଁଥିଲା ପ୍ରଥମ ଦୁଇମାସ ବଡ଼ ଆନନ୍ଦରେ କଟିଛି ଓ କିଛି ଅର୍ଥଲାଭ ଯେ ହୋଇଚ ତାହାନ୍ତହେଁ; କିନ୍ତୁ ହାକିମଙ୍କ ବଦର ନଥିର ଦାରିକ ଥ ଯାଇ ଦ୍ୱିଗୁଣ ଥର ପଡ଼ିବା ଆଗରୁ ଯେ ଅଠଦଶଦିନ ବାକି ଅଛି ଏହି ସ୍ୱଳ୍ପକାଳ ମଧ୍ୟରେ କଡ଼ମାଛ ସୁଡ଼ଙ୍ଗ ଧରାପଡ଼ିବାର କଥା । ମୁନ

ସରିମ୍ ମିସ୍ତ୍ରୀର ଜାତକ ବା ସୂଚକ ଆଦିରେ ବିଶ୍ୱାସ ନାହିଁ, କି ତାହାର
ଦେବା ନେବାକଥାର କେହି ସାକ୍ଷୀ ନାହିଁ । ଗିରିଧାରୀ ଦିଏ ସେ ନଏ,
ନେଲାବେଳେ ମାଛିଟିଏ ସୁଦ୍ଧା କେହି ନଥାନ୍ତି । ତେବେ ତା ଉପରେ
ଝୁଙ୍କି ପକାଇବା ଯାହା, ମିଥ୍ୟାବାଦୀ ଦୋଷଟିର ନଜେ ମାମୁଘର ସିହା
ତାହା । ସୁତରାଂ ଗିରିଧାରୀ ଭାବିଲେ -"ପ୍ରଥମ ତଦର ତାରିକଦିନ ହାକି-
ମଙ୍କ ପକେଟରେ ଯେଉଁ ଅନାମା ଦରଖାସ୍ତ ଗୁଡ଼ାକ ଦେଖାଗଲା
ତାହାର କର୍ତ୍ତା କିଏ ? ସେଥିରେ ମୁନସରିମଙ୍କ ଦସ୍ତଖତ ଏହା ଅସ-
ମ୍ଭବ, ଦାନାକୁ ନମାନ ବେଇମାନ କରିବା ଲୋକ ବହାଲୀ ଦସ୍ତାଲ
ଭର୍ତ୍ତାରୀ ନୁହନ୍ତି ; ଭିତରେ ମନ ଜାଣୁଚି ଯେ ଗିରିଧାରୀଙ୍କ ନାମରେ
ଯାହା ଅଭିଯୋଗ ଲେଖାଅଛି ତାହା ସବୁ ସତ୍ୟ, କଏ ଭିତରକଥା
ଜାଣିଲା ଯେ ଏତେକଥା ଲେଖିଲା ! ତେଳମାଳିଆ କଣ' ଏତେଜାଣି
କରୁଛି ? ତେବେ ମୁନସରିମ ନାଆଁରେ ମଧ୍ୟ ଦରଖାସ୍ତ କଏ ଦେଲା ?
ମୁଁତ ଦେଇନାହିଁ ! ଗ୍ରାମବାସୀଏ କ'ଣ ମେଳକରି ଦରଖାସ୍ତ ଦେଇ-
ଛନ୍ତି ? ଆମେତ ଗ୍ରାମବାସୀଙ୍କର କିଛି ଅନିଷ୍ଟ କରିନାହୁଁ ! ପାର୍ଚା-
ସ୍ତିକେ ଯାହା ଦିଅନ୍ତି ତାହାତ ସେମାନେ ମୁହେଁ ମାନନ୍ତି ତାଙ୍କ,
ଦିଆଁଏତ କରେ ବୋଲି । ଦୁଃଖୀ ରଙ୍କୀଙ୍କର ଆମପାଖେ କାମ ନଥାଏ
। ଉହଖଣ୍ଡେ ଥିଲେ ପଇସା ଚାରିଅଣା ଦିଏ; ଗୋଟାଏ ଦିନର ମୂଲ ।
ଆମେ ସେମନ୍ତି ପ୍ରଜାଙ୍କର କି କମ୍ ଉପକାର କରୁଁ ? ସାହେବଙ୍କ
ସ୍ପୃହ ଖୋଜଲେ ପ୍ରଜା କେତେ ଦୌଡ଼ବ ଦୌଡ଼ୁଥାନ୍ତୁ, ଆମର କି
ଦୋଷ ! ଦରମ୍ହାବୋଲି ଦିନକୁ ଟଙ୍କାଟାଏ ବି ନୁହେଁ, ସରକାର
ଯାରହାକିମଙ୍କୁ ଦେଲାବେଳକୁ ଦିନକୁ ଦଶପନ୍ଦର, ଯେ, ତାଙ୍କ କାମ
ଦେଖୁନ ! ଖସଡ଼ାରେ କେତେଟାଘର ଦେଖିନାହାନ୍ତି, କି ଗୁନସ୍ତା
ରି କଣ୍ଠା ଚଲାଇ ଜାଣିନାହାନ୍ତି ; ଆମେ କାମ ଗଢ଼ିଦେଉଁ, ଆମ
ବେଳକୁ ହିସାବ କରନ୍ତି କଣ' ନାଁ ମାସକରୁ ପଚଶଦିନ କାମକାଜ,
ତିଜନା ଟଙ୍କାଏ ମଜୁରୀ ମାସିକ ଟ ୨୫୯ ବେତନ । କଢ଼ାଇ କମାଇ

ଏବଙ୍କାଲକୁ ଟଙ୍କାଏ ମୂଲ୍ୟରେ ସ୍ୱଜ ନୁହନ୍ତି । ଆମ ବାପାମା କ'ଣ ଓଳୁ ନଥିଲେ ? ମାହିକ ଟ ୨୫୯ ଖର୍ଚ୍ଚକରି ଯାହାକୁ ପାଠପଢାଇଲେ ସେ ଅରଜୀବାଡ଼ବଲକୁ ବଡ଼ଲୋର ଟ୨୫୯ । ଏ ମଫସଲରେ ବସି- ରହ ମାସର ଆଉ ପାଞ୍ଚଦିନ ଅମେ କଣ କରିବୁଁ ? । ହୁକୁମଅଛୁ ଦିନକରେ ଦଶୁଟାଠାରୁ ପାଞ୍ଚଟା ସାଢଘଣ୍ଟା କାମକର, ଘଣ୍ଟାକେ ୪ନ- ମ୍ବର ଖସଡ଼ା କରିଦିଅ ଅର୍ଥାତ୍ ଦୈନିକ ୨୮ନମ୍ବର ଖସଡ଼ାକରି ଦାଖଲ ଦିଅ, ତମ କାମ ଧରିଲା । ପ୍ରକୃତରେ କିନ୍ତୁ ଯାଗାଏ୨ ଜଙ୍ଗୀର ଛଡ଼ିଲ କା ଅଟକିଗଲାତ ସେଇଠି ଦିନ୍‌ଟାଏ ବଢ଼ିଗଲା,ସୁତରାଂ ରାତି ପାହିଲା ବେଳୁ ଫେର ନଗାଗ୍ରତ ଗର୍ଜ୍ଜନଯାଏ ବଲରୁ ବସା ତସାରୁ ବଲ ଖଟ୍‌ ପ୍ରଜାକୁ ପାର୍ଚ୍ଚାଖଣ୍ଡିକ ଦେଲୁଁ; ସେ ଭକୁଆପର ଗୃହଁ୨ ସନ୍ଧ୍ୟାବେଲକୁ ଘରଆଡେ ମୁହାଁଇଲା, ଏ'ମନ୍ତେଇ ଗୃହପାଞ୍ଚଦନ ଜକୁମା ହୋଇଥାନ୍ତି; ଆମେ ଏ ପଇସା ଗୃହ କ ଛଅଣା ଲୋଭରେ ତାକୁ ଗୃହେ୨ ଖଲି ଦେଲୁଁ । ଏ'ତ ପ୍ରଜାର ପୂଣ୍ୟ ଓ ବଡ ଆନନ୍ଦର କଥା !"

"ଆଉ ଯାହାଙ୍କ୨ ଜମି ପ ମାସୀରେ ମୁଣ୍ଡଖାଇଚ, ସେ କ ଏବେ ବେଳେଯାଏ ଟେର ପାଇଲେଣି ? ନାଁ । ଦୋକାନୀ ନକଡ ତସ୍ କଣାକୁ ଶୃଙ୍ଖଶିରେ ଝୁଙ୍କିଦେବା କଥା—ଏ ପ୍ରକାର ରକବାଯା ପାସ୍ ସରବ, ପରତାଲ ଓ ଠକ ସହବ, ଡ୍ରାଫ୍ଟ କାନୁଗୋଇ ସରଜମି ନକୁ କଶ୍ଟଖଡପ୍ଟାନ ଆଣି ପଢିଲାବେଳେ' ଯାଇଁ ପ୍ରଜା ଜାଣିବ ତାହାର ମାଣେଜମୀ ଏ ପଏମାସୀରେ ଢର୍ଚ୍ଚି ଶଗୁଣ, କୁଆଡ଼ୁ ଦେଲ ଏହି 'ଫରକ' ଶୁଣକଲାଗି ପ୍ରଜାର ପ୍ରାଣଯାଉ ପଛକେ ହାକିମଙ୍କ ଅଛି 'ନାଗଣ୍ଡ'ଫରକ୍, ସନାତନକାଲ ମାଲିକସ୍ ବନ୍ଦବସ୍ତ ବେଳୁ ଏହି ପ୍ରଥ ଷ୍ଟର ଅତି ଆଦର ; କେତେ୨ ହାଇସ୍ବୀଣରୁ ଏ ନିୟମଟି ହାକିମମାନ ରକ୍ଷା ନ କରେ କହୁଲ । ଏହି 'ମାଣକେ ଗୁଣ୍ଠେ' ପ୍ରଥାଟି 'ରକ ଯାବର' ବୁହାଇକେ ରଘତର ମୁଣ୍ଡ ଖାଉଚି, ତାଲ୍ବର ଓ ଦରବାସ ଜାର ଏଥିଦ୍ୱାରା ପୁଅବାର; ଯେତେଥର ପଇମାସୀ ହେଉଚ

ହେବ ବେତେଥର ଭକବା ପାସହେବ ଓ ବେତେଥର ମାରଣବେ
ଗୁଣେ ଏଣେ ବା ତେଣେ ଛଡ ପଡବଟ ! ଭିଗାଙ୍କୁ ଏକା ଦେଖି
ହାକମ ନ ହେବେ କ ? ଭଉଁରିଆ ମାପ ନାହିଁ ଶୁଣିଲେ ଯେଉଁ ହାକମ
ତଡ ଉଠିବେ ସେହି ଭଳଆ ହାକମ ବଦଳ ଭୁଲୁଥିବେ'! ଗିରଧାରୀ ଆହୁରି
ଲୁବଦେଲେ ଯେଃ—ପଇମାସୀ ମୂଳରେ ଯେ କେତେଜଣ ଉପକାରୀସ୍ଥ
ପ୍ରଜାଙ୍କୁ ଲାଭକରାଇ ଦେଇଛୁ ସେମାନେତ କମ୍ ବିଆଣା ନୂହନ୍ତି? ଏକ୍ସା
ରସ୍ୱଆ ଭଣ୍ଡାରବୃଦ୍ଧିକୁ ନଅଣ୍ଟ ହାକମଙ୍କ ଉତ୍ତରରେ ତେଲଘଷି ସ୍ୱପା-
ରସଆଣି ମତେ ଦେଲା ଯେ "ଯେ ଉପାୟରେ ପାର, ପନ୍ଦବାହକଙ୍କୁ ଭନ୍ତ
ଭୂମିଦାନ କରବ" । ମୋ ପକ୍ଷରେ ଭୂମିଦାନଟା ଅତସହଜ । ଭରସ୍ୱଅ-
ଲ ପ୍ରଜା ଗୁଡିକ ମୋ ସପକ୍ଷରେ 'ନିଶ୍ଚେ' ହଡାଲାଞ୍ଛଧର କହିଯିବେ
ଯେ ମୁଁ କପର ସଚ୍ଚୋଟଲୋକ । ହଡା'ଡ ବୁଢାଗୋରୁ କାଲି ଘଡ
ଅରକନ ମରବା ଜନ୍ତୁ, ବୃଷଭଲାଙ୍ଗୁଡ ଧରକର ସ୍ୱବା ଏମାନେ ମୋ
ପତଙ୍କୁ ସଫାଇ ଦେଇଯିବେ" । ଗିରଧାରୀଙ୍କ ଭାବନା ଗୁଡିକ ବହୁମୁଖୀ
ହୋଇପଡିଛନ୍ତି । ସେ ଆହୁରି ଭାବୁଛନ୍ତି ଯଥାଃ--"ଏ ଯେଉଁ ଅତ୍ୟାଚାର
ରିଗାସ୍ତର ନବସିବା ସେ ମଧ୍ୟ ସହଜେ ହାତହୋଇଯିବ ଯେ; ମୁକ୍ତାର
ଭ,ଟଙ୍କାଟାଏ ପାକେଟରେ ଗୁଞ୍ଜିଦେଲେ ଘଣ୍ଟାଟାଏ ପ୍ରଶଂସାଗାଇବେ ଓ
କଟେ' ଢଙ୍ଗରେ କଥା ବୁଲାଇଦେବେ । ମୁକ୍ତାରଙ୍କ ପେଟକାବ,ଓକ-
ଙ୍କ କଥା କହ, ଟଙ୍କାଟାଏ ବୋଲି ହେସ୍ତକ୍ଷନ କରିବା ଭଳର
ଟ୍ରେଞ୍ଜା-ପୋଷାକପିନ୍ଧା ଓକୀଲସାହେବ କେତେଜଣ ବାହାରିବେ !
ଶଂ ଏ ମୁକ୍ତାରଙ୍କଣଙ୍କ ସହଜେ ପର ଛାଡିଦେବେ" । ଗିରିଧାରୀ
ମନ୍ତ୍ରିକା ସ୍ତୁହ ବଳୁଶା ଗୁଡ ଏ କରି ଠିକ୍‌କରି ନେଲେ ଯେ ଅଭ-
ଯୋଗ ଗୁଡାକରୁ ତୌଦପଣ ଏହୁପରି' ଉଭେଇ ଯିବ ନିଶ୍ଚୟ । ବାକି
ଯୋଗ ଭିତରେ ରହିଲା 'ଆମ ଗ୍ରହିଲୀଳା ଉପରେ,'—ଏହା କଣ
ଏ ଆଖିରେ ଦେଖି ସାକ୍ଷୀ ଅଛନ୍ତି ? ଉପର ହାକିମର କଣ ତଦା-
କସ କାମ ? ଆମର ଉପରିସ୍ଥ ହାକିମଙ୍କର କାମକୁ ତଦାରଖ

କରିବା ଲାଗି ତାଙ୍କ ଉପରେ ବଡ ହାକିମ, ବଡହାକିମଙ୍କ ତା
ତଦାରଖ କରିବାକୁ ଆହୁରି ବଡ ହାକିମ, ସୋପାନକୁ ସୋପାନ ଖ
ଅଛନ୍ତିତ । ସରକାରୀ-ଡ୍ୟୁଟି ତଦାରଖ କରସିନା କାମ, ଅମେ ତ'
ଖାଇଲୁଁ କ'ଣ ପିନ୍ଧିଲୁଁ, କେଉଁଠି ବସିଲୁଁ ବା ହସିଲୁଁ, ଏହା ତଦାର
କରିବା ତାଙ୍କର ଡ୍ୟୁଟି ନୁହେଁ । ପୁଲିଶବିଭାଗ ନୁହେଁ ଯେ ଥାନା
ଜମାଦାର ଜଣେ ଜଇଣ୍ଟକମିସନର କେଉଁ ତାରିଖରେ କେ
ବୋତଲ ଖତମକଲେ ସେ ଖବର ଟିପୁକରି ଉପରକୁ ପୋଡ଼ଦେବେ
ପୁଲିଶବାଲାଙ୍କର ପହରାଦେବା କୁକୁରଙ୍କ ଭଳିଆ, ଖାଲି ଉରାଣ ଗୋ
ଗୋଃ କରିବାଲାଗି ଚାକରି, ଆମ ଚାକରୀ ତ ତାହା ନୁହେଁ ! ବ
ମଫସଲରେ ଦନଯାକ ଖଟି କାହୁଅ ଘାଣ୍ଟିସାରି, ରାତିରେ ଯେ
ଟିକଏ ଆନନ୍ଦ ପାନ ନକରୁଁ ମନଟା ସ୍ଥିର ରହିପାରବ କି ? 
ନ ଜାଣେ, କିଏ ନ କରେ ? ବନ୍ଦବସ୍ତ ଇଲାକାରେ ସାନଠାରୁ ବ
ଯାଏ ବଡ଼ା' ଯବାନ୍ ଭେଣ୍ଡିଆ ବାବୁଗୁଡ଼ିଏ ମଫସଲକୁ ଆସିଚନ୍ତି
ପାଞ୍ଚୁଟାଯାକ ଇନ୍ଦ୍ରିୟଙ୍କୁ ଆହାର ଖୁଆଇବାତ ଫେର୍ ତାଙ୍କର ଦରକା
ଆମ ଛୋଟସାହେବ ହାକିମଙ୍କ ଭଙ୍ଗ ଅନୁମାନରୁ ଜାଣିପାରୁଚ, 
ନିଜ ପେଟକଥା ନିଜମନରେ ଖେଳୁଥିବଚ ! ଏ କାନ ଯାହା' ଶୁଣି
ଗତ ବନ୍ଦବସ୍ତ କାର୍ଯ୍ୟବେଳେ କମ୍ପ୍ ସାଙ୍ଗେ' ସବୁପ୍ରକାର ଯୋ
ଏସ୍ଥାନରୁ ସେ ସ୍ଥାନକୁ ଯାଇଥାନ୍ତି । ମୁଦଦୋକାନରେ ଅବ
ଜନସମୂହା ଓ ଛପରା ଗାଡ଼ୀ ଦରାରଖଣ୍ଡରେ କମ୍ପ୍ ବାବଲ୍ ଅ
ଗୁଡ଼ିଏ ସୁନ୍ଧା ମାହାଫିଜଖାନାର ଏକଅଂଶ ହୋଇ ଚାଲୁଥାନ୍ତିପରା 
"ଆଛା ଦେଖାଯାଉ କେଉଁ ପାଣି କୁଆଡକୁ ବୋହୁଚ, ମୁନସି
ପଠାଣଟା ହାତ ମୁହଁ ପୋଛାପୋଛି କରଦେଉଚ, କୋରାଣ କ
ସୁନ୍ଧା କି ମାନବନାହିଁ ? ତକାତ ଗିରିଧାରୀ ଛାଡ଼ଦେବା ଲୋକ ନୁହ
ମରିବ ଯେବେ ସମସ୍ତଙ୍କୁ ମାରିସାରି ମରିବ । ଏ ତେଲମାନ୍ଟା ଉ
କାହିଁକି ମଲରୁ ମୋ ମନ ପାପଛୁଉଁଚ, ଅବିଶ୍ୱାସୀ ନିମକ୍‌ହରାମ 

ବାଲି ସମ୍ଭବ; ଅଚ୍ଛ ଭକ୍ତି ଚୋରର ଲକ୍ଷଣ; ଏବେ କାମକାର୍ଯ୍ୟ
ଛକୁ ପକାଇ ମୋହରି ସେବାରେ ଭାରି ମନଯୋଗ; ପେଟରେ
ପଟଗୁଡ଼ାଏ କଷ୍ଟପୂ ଭରା; ହେଉପଛକେ, ସେ କେଡ଼େ ଆମ ବଶ
କଡେ, ଖୋସାମଦ କରବ ନାହିଁ, ଯେତ୍ତେହେଲେ ତାବେଦାର,
ଲୁ ଗଲେ ମୋ ମୁଣ୍ଡ ତଳକୁ କରାଇଦେବ; ତାହାର ପ୍ରାପ୍ୟ ଅଂଶ
ସବର କଡାକାନ୍ତି ବୁଝୀ ନେଉଚ, ଏବେ ସାଧୁ ହୋଇଯାଇ ମୋ
ଗ୍ରେ ଅଠାବୋଳ ଦେବାକୁ କଏ ନାହିଁକରବ ? ଅଚ୍ଛା, ହାକିମ
ି କଣ ତଦାରଖ କରୁଚ ଦେଖ ! ଆଉ, ଗୋଟିଏ ସୁକ୍ଷ୍ମଭାନୁମଦ
ଟ କରିଦେବକି ? ପାବଗାର ଏଠିସେଠି ଗୋଷ୍ଠାକେଡେ
ହ୍ରି ଚଢାଇଦେଇ ତାକୁ ଡହଟନାଗସ୍ତ୍ରେଟରେ ଅଣାଇ
ୁ ଆଗରେ ପାଗରେ ଠିଆ କରାଇଦବଁ ଭଲ ! " । ଏହପରି
କୁ ଭୁଆ ବଚାରଗୁଡ଼ାଏ ବୁଦ୍ଧିମାନ୍ ଗିରିଧାରୀଙ୍କ ମୁଣ୍ଡରେ
ାଳନ ଗ୍ଲଲଛ । "କାମତ ଚଳବ ! ଭାଏସ୍ତିଚଯୁରବ । କାହୁଅରେ
ଡ ଅଣ୍ଡାଲୁ? କଏ ଗୋଷ୍ଠାଙ୍କର ଗୋଡ଼ ଖସିଗଲେ କ ପଲକଯାକ
କ ମାଛ ଅଣ୍ଡାଳବା ଛଡ ଶୁଖିଲାକୁ ଉଠିଆସନ୍ତି ? ମୁଁ ତ ଆଉମାନଙ୍କ
ନୁହେଁ । ଏହୁ ଅମୀନ କାମଙ୍କର ଆମଗା ଗଦାଧର ଥାର ସନରେ
ାଟାଏ ବାହାଘର କଲ୍ଲ ଘର ଛପାର କଲ୍ଲ ଓ ଜମୀ ଗୃହମାଣ
; ସେଥର କଥାବାର୍ତ୍ତାରେ କହୁଥିଲ୍ଲ ଯେ ବାବୁଘରକୁ ପାଞ୍ଚଶହଟଙ୍କା
ଡ ଦେଇଚ ବୋଲି; ଆମେ ମୋଟାମୋଟି ଧରଥିଲୁଁ ଦୁଇରେ
ନ୍, ବାଲେଶ୍ୱର ଜଲ୍ଲରେ ଦଇଟା ହଜାରକଆ ମୌଜା ପାଇଥିଲ୍ଲ
ସେ କଷ୍ଟପୂ ଚର୍ଣ୍ଣି ଚପିବର ଏବେ ଉଠାଇ ଆଣିଲ୍ଲ, ତା ନ କର-
ି ଆମ ବ୍ରହ୍ମାଙ୍କୁ ମାସ୍ତେବାଲ କପାଳେଶ୍ୱର ମହାଦେବଙ୍କ ପାଖେ
ି ସେକଲା ପାରସରେ ଅଭିଷେକ କରାଇଥିଲା କପା ? ମୁଁ
ି ଉପଦେଶକୁ ମାନ ଚଳନ୍ତ, କାହାର ରକ୍ତକୁ କାଟିବା କଥା
ଦେହୁ ହୁଏନାହିଁ କ ହେବ ନାହିଁ । ଏ ଚେନମାନ୍ଟା ବଦମାସ

ହେଉ ପଛକେ ଥିଲାବୋଲି କେତେବେଳେ ହେମନ୍ତ ଦଫାଦାରଙ୍କୁ ଦ
ଖୁରାଷ୍ଟା ବଧା ଗୃହସ୍ଥା ହଲାଲ ଦଏ, ନହେଲେ ଏକଯାଏ ମୋହାଣ୍ଡରେ
ଦକ୍ଷୁନ ପୂରାହୋଇ ନ ଥାନ୍ତା, ତାହାର କଲ୍ୟାଣରୁ କେବଳ ମୋହର
ସାତଅଣି ହାଣ୍ଡରେ ମୋଟରେ ଅଧସହସ୍ର ହେଲାଭ ! ଗାଁଅରୁ ସବୁ
ପଠାଇ ପାରୁନାହିଁ, ଏଠି ସେଠି ଗୁଞ୍ଜାଗୁଞ୍ଜି କରୁଚ, କଏ କହୁଯାରେ
ହାକିମ ହୁକୁମାରେ କି ଗ୍ରାମବାସୀ ମେଳରେ ଯେବେ କଏ ହାତ ମାର
ଦଏ, କି ମତେ ହତାହ ଏ ମୁକାମରୁ ଉଠାଇ ନଅନ୍ତି, ତେବେତ ମେ
ଘଢ ଫାଟିଯିବ"। ଗିରଧାରୀ ଏହିପରି ଉତ୍ପୃଗୁତ୍ତ୍ୱ କରି ସାତେ
ଯେତେବେଳେ ସାହି ମଧ୍ୟରେ ସମସ୍ତେ କବାଟଦେଇ ଶୋଇଗଲେ
ବଉଳା ନଜର ଭବିଷ୍ୟରେ ସାହମୁଣ୍ଡର ଗୋଟିଏ ସାହାଡ଼ାଗଛ
ମୂଳେ ଗାତୁଟିଏ କରି ତା କାଗଜ ଭୁଙ୍ଗାଟି ଓ ବଟୁଆଟି ପୋତାପୋ
କରିଦେଲ, ବସାରେ ନିଶ୍ଚିନ୍ତ ହୋଇ ଶୋଇପାରିଥିଲା । ସମସ୍ତ ପଡ଼
ଚୁପ୍‌ଚାପ୍ ଦିନେ ଏଠାରୁ ଖୋଲାଖୋଲି କରି ଆପଣା ପଦାର୍ଥ ଅ
ନେଇଯିବ ଏହି ଆଶା ଓ ଭରସା,ଯାହା ଅଦୃଷ୍ଟରେ ଫଳେ ସାତଟା
ପାଣିରୁ ମଧ୍ୟ ତାହା ମିଳେ । ତେନମାନ୍ ଯୋଗୁଁ ଲାଭ, ସେହି ଯୋ
ଶତ୍ରୁ, ହିଁ ନଫା ନହେଲେ ଦୁନିଆ ଚଳବନାହିଁ, ଫେର ସେହି ନ
କଣିକାରେ ଦୁନିଆଁ ଜଳଯିବ । ହାକିମ ତାରକ ବଉଡ ବୁଧବାର
ଏ ତା ପୂର୍ବ ଶନିବାର ରାତିକଥା । ରବିବାର ଭୋରରୁ ଉଠି ଗିରଧା
ନିତ୍ୟକର୍ମ ସାରି ଆସିଲା ବେଳେ ସାହାଡ଼ାଗଛ ମୂଳଟିକୁ ଠିକ୍
ଦେଖି ଅଚିଲେ । ପଏମାସ କାମକୁ ଯିବାର ନାମ୍ ନଥିଲ ଗିରସ୍ତାଙ୍କ
ଲାଙ୍ଗଲାମ ସାଇବାକୁ ବସିଗଲେ । ଦଏ୨ ପ୍ରଜାଜଣ କେତେ ଆସି ଅ
ବଣ୍ଡଦା ଦାଣ୍ଡରେ ଜମିଗଲେଣି, ଏଗୁଡ଼ିକ କାଲୁ ଗୋରୁ, ଫନ୍ଦି
ପାଙ୍କେ ଯିବାକୁ ବୁଝି ନାହିଁ କି ବଳନାହିଁ, ଯେ ଯୁଆଡ଼େ ଅଛନ୍ତି
ସେହିଆଡ଼େ ଦୌଡ଼ଯାନ୍ତି । ପଶ୍ଚିମତବାଟ ଉଦଥା ଦୁଇ ଖୁରାଜଣ
ହନଅ ହାଜର । କଥାଗୁଡ଼ା ମଧ୍ୟରେ ଅମୀନଙ୍କର ବଉଷବଦନ

ମୀନ ବିରୁଦ୍ଧେ ଯେ ଅତ୍ୟାଚାର ଓ ଘୁଷ ଆଦିର ଅଭିଯୋଗ ଦରଖାସ୍ତ-
ାକ ବିଚାର ଉପରେ ଅଛି ସେ କଥାର ବିଶେଷ ଜଳ୍ପଣା ଲାଗିଗଲା ।
େଖାସ୍ତ ବିଚାରୀ ସାହସ କରି ତାଙ୍କୁ ଧରିପାରୁ ନାହିଁ ତହିଁର ସେ
େଜଣ ମୁଖିଆ ମାମଲତକାର ନିଜସ୍ୱାର୍ଥ ଲାଗି ସବୁବେଳେ ନିମକହଛା
ାକ । ମୁଣ୍ଡ ପଡ଼ିଗଲେ ସୁଦ୍ଧା ଯେଉଁ ଅମୀନର ପ୍ରସାଦରୁ ତାଙ୍କର
ାଜନ ଦେଶ ସୂଚିଯିବା ଉପରେ ରହିଲାଣି, ସେ ଅମୀନଙ୍କୁ ଯେପରି
ହଉ ରକ୍ଷା କରିବେଇ କରିବେ । ଆପଣା୨ ଭିତରେ ସେମାନେ
ଡାଲାଙ୍ଗୁଳ ଧରା ସାକ୍ଷୀ ସାବୁଦ ସ୍ଥିର କରି ନେଲେଣି ସତ । କିନ୍ତୁ
ମ ମଧ୍ୟର ଖ୍ରିଷ୍ଟିୟାନ ପଢ଼ା ମଧ୍ୟରେ ତାଙ୍କ ମନଭିତରେ ସମସ୍ତେକି
ପାଆନ୍ତି ? ଦୁଇ ଖ୍ରିଷ୍ଟିଆ ଶତ୍ରୁ ମଧ୍ୟ ଅଛନ୍ତି ଯେ ଚାହିଁଲେ ସେମାନେ
ଳବାନ୍ଧ ଏହାଙ୍କୁ ଭଣ୍ଡିଆ କରିପାରନ୍ତି । ଏହିଷଣ୍ଡ କେତେଜଣ କାହିଁ
ୀନର ପାଖ ମାଡ଼ି ନାହାନ୍ତି ? । ଏହାଙ୍କର 'ହଡ଼ା' ହଳପଲୁ ଡର
ହିଁ, ତାଙ୍କ ପୂର୍ବପୁରୁଷ ଆରବନବସ୍ତରେ ବୃଷଭଲାଙ୍ଗୁଧରି ମିଛ
ିଥିଲେ, କ'ଣ ଗୁଡ଼ାଏ ମନ୍ଦ ଫଳ ଗଲାକି ? ଆଉ ମଝିରେ
ୁଡ଼ାଏ ଦନ, କପରି ବାଣ୍ଟକଲେ ସେମାନଙ୍କ ମୁହଁ ବନ୍ଦ କରାଯାଇ
ିବ ?" ଇତ୍ୟାଦି୨ ବିଚାର ହେଲା ପରେ ଦେଲବୁଡ଼ିକୁସ୍ତିରଟେ ହେଲା
'ରାଜକବଡେଶୀ ତହସିଲଦାର ଓ ପଠାଣ ମାହିର ବୁଢ଼ା ମାନଙ୍କ
ହିଙ୍କ ଆଶ୍ରୟ ନେଇ ପାରିଲେ ବରାଡ଼ିକୁ ଆଟିଏ ସୁଦ୍ଧା ଫିଟିଯାଇ
ଳ ବିରୁଦ୍ଧରେ ପାଟି ଫିଟାଇବ ନାହିଁ । ଏହିପରି କଣ୍ଠା ଉପଦେଶ
ଗୁଡ଼ାଏ ଦେଇ ଯେ ଯାହାର ଘରକୁ ଗଲେ ।

ିରିଧାରୀ ବାବୁ ଦଳପାଳ ଠାକୁରଙ୍କୁ ମନେ୨ ଲାଞ୍ଚ ଯାଚୁଛନ୍ତି ଯେ
ଗ୍ରାମର ଇଷ୍ଟ ମଦନମୋହନ ଯେବେ ଏ ବିପତ୍ତିରୁ ଖଲାସ
ିଅନ୍ତି ତେବେ ସେ ଏସନ ଦୋଳଯାତ୍ରାରେ ଯୋଡ଼ାଏ ଛଡ଼ି ଚରାସ
ାଲକୁ ନେଇ ମେଳନ ଗହଣରେ ଦେବେ ଇତ୍ୟାଦି୨ । ମନ
ାରିଗ୍ ମରିଯାଇଛ କିନ୍ତୁ ମୁହଁଟାଣ ଦେଖାଉଛନ୍ତି । ତହସିଲଦାର

ବାବୁ ଏବ ମାନଙ୍କୁ ଏ ବୁଦ୍ଧିଙ୍କ ପାଖକୁ ଯିବା ବେଟେବୁର ମାନଙ୍କ
କାମ ଦୁହେବ କହିଲ ! ଶେଷରେ କଲୁ କାହାରିକୁ ସଙ୍ଗେ ନ ନେ
ସଙ୍କ ଅନ୍ଧାରୁଆ ଦେଖି ଗିରିଧାରୀ ରାଜକଚେରୀ ଅଡକୁ ମୁହାଁଇଲେ
ମନେ୨ ସ୍ଥିରକରି ଯାଇଚନ୍ତି ଯେ ତହସିଲଦାରଙ୍କୁ ମାହାର୍ଦ ଦେ
ଧର୍ମ୍ମବାପ କରିବେ ଓ ଲମ୍‌ହୋଇ ତାଙ୍କ ଗୋଡ଼ତଳେ ଗଡ଼ି୨ କାନ୍ଦ
କାଟକରି କାମ ହାସଲ କରିବେ ବୋଲି । କଲୁ ବାଟରେ ସାହିମୁଣ୍ଡ
ରାହାଡ଼ା, ସେ ସାହାଡ଼ାଗଛ ପାଖଦେଇ ଗଲାବେଳେ ଲୋଭରୁ ଖ
ଡଗୃର ଓଲଟି ଗଲା । "ଆଚ୍ଛା, ତହସିଲଦାର ଯେବେ କଛୁ ଅଣ୍ଡାଗ
ଦେଖାକନ୍ତି, କ ମଡେ ଧରନ୍ତି ମାଲତଳ ଆଣ ଦେଖାଅ ବୋଲି, ଏ
ଭାବ ଟଙ୍କା, ମକଦମାରେ ଶଦେ ହୁଇଯଇ ଗଲେ ସ୍ଵବା ଦ'ଚାଯା
ଦବାଇନମିଯକୁଠାଇ ଦେବାଭଳପାଣି ! ନାଃ କ'ଣଚେହବ ପଛକେଦେ
ଦେଖି, ହାକମଙ୍କ ଗୋଡ଼ତଳେ ପଡଯିବ, ଦୟାକର ହାକମ ଯେ
ବଞ୍ଚାଇ ଦଅନ୍ତୁ ଚେବେଡ ଟଙ୍କାତକ ରହଯିବ !" ଏହିପର ଷ
ସ୍ଵବଗୃର କର ଗିରିଧାରୀ ଲେଉଟି ଆସିଲେ ଓ ସିରସ୍ତା ଖୋଲି ପୁ
ଦମ୍‌ରେ "ପ୍ଲାର୍ଗ" ବାଣ୍ଟିଦେଇ କାମ ଖଡମ୍ ଦେଖାଇଦେଲେ । ଅର୍ଥ
ଏଣେ ପ୍ରଜାତ ଅନୁପସ୍ଥିତ, ତା ପାର୍ଚାଖଣ୍ଡିକ ବହି ଡନକାଲମଧ
"ଦଆଗଲା" ବୋଲି ଦେଖାଇ ଦେଇ, ସେ ପାର୍ଚା କାଗଜ ଖଣ୍ଡି
ମାଣ୍ଡିତଳେ ଗୁଞ୍ଜିଦେଇ ଯାଉଥାନ୍ତି । ପଣ୍ଡିମକବାଟ ଅଛନ୍ତି ସେ
ଯଥାସ୍ଥାନରେ ପହଞ୍ଚାଇ ଦେବେ । ଯୋଗକୁ ସେତେବେଳେ ପାଖଆଖ
ତେନମାନ୍ ନାହିଁ, ମୁନସର୍‌ମ୍ ମିୟାଁ ଡକାଇ ନେଇଯାଇଚନ୍ତି ଟେ
ତାଙ୍କ କ୍ୟାମ୍ପକୁ ଯାଇଅଛୁ । ଦ'ଚାଦନ ଏହି କଷ୍ଟରେ ଗଲ, ଅ
ଏ ଦି'ଦିନ ପ୍ରଜାଙ୍କର ଜଲଟଙ୍କଏ ସ୍ଵବା ଗ୍ରହଣ କରନାହାନ୍ତି । ଯା
ପାର୍ଚା ପଛକୁ ଥିଲା ସେମାନେ ଏକପ୍ରକାର ମାଗଣା ପାର୍ଚାନେଇ
ଖୁସୀ, ବା ଯାହା ଦେବାର ପଣ୍ଡିମକବାଟଙ୍କ ହଥା ଅପଣାଗର୍ଭରେ ପ
ଦେଇଚନ୍ତି ।

ବୁଧବାର ତା ୭ ଖ୍ଚ ଜାନୁୟାରି — ଆଜିର ଏଜ ବାରଟା
ବଳେ ହାକିମ ସ୍ୱୟଂ ଅଭ୍ୟାଗ୍ନିର ମୋକଦ୍ଦମା ଉଦାରଖକରିବେ।
ରିଧାରୀ ବାବୁ ଗୋଟିଏ ଗୋଲ୍‌ପେଚା ମୁହଁ ଚାହିଁ ସକାଳୁ ଉଠିଲେ,
ଦମଧ୍ୟରେ ଜାଣିପାରିଲେ ଯେ ମୌଜାର ପ୍ରଜାମାନେ ସମସ୍ତେ ଏତେ-
ବଳକୁ ମୁହଁ ମୋଡ଼ି ଦେଲେଣି, ଆଉ କେହି ଜଣେ ସୁଦ୍ଧା ପାଖେ
ଶୁନାହାନ୍ତି। "ନିଃସାଶ୍ରୟଂ ମାଂ ଜଗଦୀଶ ରକ୍ଷ"। ମଦନମୋହନଙ୍କୁ
ହୁକୁ ବେଶିକରି ଯାଚବେ, ବୋଲି ମନଟା ହେଉଚି, କିନ୍ତୁ ଲୋଭ
ତୁନାହିଁ; ସେ'ତ ଗ୍ରାମ ମଧ୍ୟରେ ବାବୁଘର ଠାକୁର, ମୋରତ' କିଛି
ଧିକାର ନାହିଁ, ମୁଁ ସିନା ବାହାର ଆଦନାଲୋକ! "ଛତ୍ରି ଛତିସରେ
ଭୁଚ୍ଛ ପଞ୍ଚାଶଟଙ୍କା" ଦେବ, ଆଉ ଏଥିରୁ ବେଶୀ ପରଙ୍କ ଠାକୁରଙ୍କୁ
ବା ଅନ୍ୟାୟ। ମୁନସରିମ୍ ଓ ଗିରିଧାରୀ ବସି ବାକିବଦରମାନ
ାବନାରେ ଲାଗିଚନ୍ତି, ରଜାକଚେରୀ ନିକଟ, ବରଗଛ ମୂଳେ ଖଣ୍ଡିଏ
ଜ ପଡ଼ିଚି, ହାକିମ ସାହେବଙ୍କ ଘୋଡ଼ାଟି ଠୁକ୍ ହୋଇ ସନ୍ଥୁଛି
। ଗିରିଧାରୀଙ୍କ ଛାତି ଦାଉଁ, ହଠାତ୍ ଉଠି ହାକିମଙ୍କୁ ସଲାମଟିଏ
ଖାଇଦେଇ ଘୋଡ଼ା ଲଗାମଟି ଧରି ପକାଇଲେ। ଛୋଟ ସାହେବ
ୀକିରେ ବସିପଡ଼ି ମୁନସରିମ୍‌କୁ ଲକ୍ଷକରି ହିନ୍ଦୀଭାଷାରେ ହୁକୁମ
ଲେ "ଥାଉଖଣ୍ଡେ ଚୌକି ଓ ଖଣ୍ଡେ ହାତପଙ୍ଖା ଶୀଘ୍ର ଅଣାଅ,
କଟ୍ରୀ ପଚ୍ଛେ ଆସୁଚନ୍ତି ବାଟରେ ରାଜକଚେରୀ ପାଖେ ଜାନ୍-
ଇ ଓ ମାନେଜରଙ୍କ ସହିତ କଥାଭାଷା ହେଉଚନ୍ତି, ସେ ଏହି
ଲେ ବୋଲି"। ଗିରିଧାରୀ ଅମୀନର ଏତକ କାନରେ ପଡ଼ିବା-
ତି ହାତଗୋଡ଼ ଥରିବାକୁ ଲାଗିଲା ଓ ଏହି ସୁଯୋଗରେ ହାକିମଙ୍କ
ଲଟି ତା ହାତରୁ ଖସିଗଲା; ପ୍ରଜାଗୁଡ଼ିଏ ବସି ଦେଖୁଚନ୍ତି କାହାରି
ଧି ହେଉନାହିଁ ଯେ ଉଠି ଯାଇ ଘୋଡ଼ାଟିକୁ ଧରି ପକାଇବେ
। ଘୋଡ଼ାଟି ବାହାରେ ଯେଉଁବାଟରେ ଆସିଥିଲା ସେହି
ରେ ଅପଣା ଗୋଡ଼ର ବଳ ଦେଖାଇ ଚମ୍ପଟ, ଏଣେ ଗିରିଧାରୀ

ବାବୁ ସେହି ଖଟରେ ବସିଥିଭ ଅର୍ଦ୍ଧ ଅଚେତନପ୍ରାୟ; ମୁନସରିମ୍ ମିଶ୍ର ଚୌକି ଆଣିବାଲାଗି ଦୌଡି ଗଲେଣି, ହାକିମ ସାହେବ ଏକଦମ୍ ଅଗ୍ନିଶର୍ମ୍ମା, ହନ୍ଦରେ ପ୍ରଜାଙ୍କୁ ନିଜର ବନ୍ଧୁବାନ୍ଧବ ଦିସ୍ତାରେ ପକାଇ ଅଭିବାଦନ କରୁ୨ ଘୋଡ଼ା ଯାଇ ଅଦୃଶ୍ୟ, ବଡ଼ସାହେବ କର୍ତ୍ତା ଅଫି ପ୍ରବେଶ ହୋଇଗଲେ ।—ଇତି ପ୍ରମାଣ ପଙ୍କ ।

## ନବମ ଅଧ୍ୟାୟ ।

### ଗାଁଉଲୀଲୋକେ ଗୋରାଙ୍କୁ ଠାକୁରପୂଜା କରନ୍ତି ।

ବଡକର୍ତ୍ତା ଶ୍ରୀକୀନସୀନ୍, ଛୋଟସାହେବ ନିଜ ଘୋଡାଟିର ଅବସ୍ଥା ଭାବ ଅନ୍ୟମନସ୍କଭାବେ ଦଣ୍ଡାୟମାନ, ମୁନସରିମ୍ ଆଉଖଣ୍ଡେ ଚୌ ଖୋଜିବାକୁ ଯାଇ ଅନୁପସ୍ଥିତ, ଅମୀନ ହଗୁରା ଖଟରେ ବସି ଥରୁନ ବଦରକାନୁନଗୋ ସାହେବ ଏକ୍କା ବଡକର୍ତ୍ତାଙ୍କ ପ୍ରଶ୍ନର ଉତ୍ତ ଦେଉଛନ୍ତି । ଶହେଖଣ୍ଡେ ପ୍ରଜା, ଲୁଆଡ଼ୁ ଜାଣିଲେ, ଆସି ଜମିଗଲେଣି ଗିରିଧାରୀବାବୁ ବଡକର୍ତ୍ତାଙ୍କ ସ୍ୱପ୍ନରେ ସୁଦ୍ଧା ଦେଖିନଥିଲେ, ତାଙ୍କ ଗୁ ରାଗ, ଓ ଶୃଙ୍ଗହୀନ ଲମ୍ବ ଗୃବୁକଷ୍ଟିକୁ ଦେଖିକରି ଥକ୍କାହୋଇ ଯା ଥିଲେ, ଆସି ବଡ଼କର୍ତ୍ତାଙ୍କୁ ମୁଣ୍ଡଲଗେଇ ଦଣ୍ଡବତଟାକରି ପକାଇଲେ କର୍ତ୍ତାଙ୍କର ଇଂରାଜୀକଥା, ତାଙ୍କର କଥା ଗୋଟାଏହେଲା ସେଠିଥି ଲୋକଯାକ ବୁଝି ପାରୁନାହାନ୍ତି-ତନ୍ତୁ ନିଃଶବ୍ଦେ ସମସ୍ତେ କେବ ଏକଦୃଷ୍ଟିରେ ଚାହିଁ ରହିଛନ୍ତି । ଛୋଟସାହେବଙ୍କ ମୁହଁରୁ ହୁଁ ବାହାରୁନାହିଁ, ଦେଖିଲାଲୋକ ମନେକରୁଛନ୍ତି ଯେ ତାଙ୍କର ତଦାରଖ କରିବାକୁ ବଡକର୍ତ୍ତା ବିରାଜମାନ, ଦଶପନ୍ଦର ମିନିଟ୍ ନ ଆଦ ଦେଖିସାରିଲା ପର, ବଡକର୍ତ୍ତା ପକେଟରୁ ଖଣ୍ଡେ ନୋଟ କାଢି ଯାହା୨ ପ୍ରଶ୍ନକଲେ ଓ ଉତ୍ତର ପାଇଲେ, ।ତାଙ୍କର ମୁଖ ଓ ସ୍ୱରରୁ ଲୋକେ କେବଳ ଏତିକି ଅନୁମାନ କରୁଛନ୍ତି ଯେ ସେ ହାକିମଙ୍କ କଥାରେ ବିରକ୍ତ ହେଉଛନ୍ତି ଅଥଚ ତାଙ୍କ ଭଲସା

କାନୁନଗୋଙ୍କ କଥାରେ ହିକବ ବୁଝିଗଲାପରେ ଥଣ୍ଡା ପଡ଼ିଯାଉଚନ୍ତି, ଫେର ସ୍ୱଗୁଚନ୍ତି, ଅମୀନ ମୁନସରିମ୍ ଖାଲି କାଗଜଗୁଡ଼ାଏ ଅଣ୍ଡାଳ ଶାଣ୍ଟୁଚନ୍ତି, ଜଣ୍ଟୁ ଅକ୍ଷରଟାଏ ମଧ୍ୟ ପାଟିରୁ ବାହାରୁନାହିଁ । ଏପରି ଅଭିନୟ କଛି ସମୟ ହୋଇଯିବା ପରେ, ବଡକର୍ତ୍ତା ପ୍ରଜାଙ୍କ ମୁହଁକୁ ଚାହିଁ " କ ଉତ୍ତର ଅଛି " ପଚାରିଲେ ।

'ପ୍ରଜାଏ' ବୋଲି କହିଲେ ଘରୀ ହିସାବକର ଜଲଦପୁରର ଗୃହସ୍ଥ ଚେଯ୍ୟାନବେ ପ୍ରଜାଙ୍କୁ ବୁଝାଇଲା । ଶହେଖଣ୍ଡେ ଉପସ୍ଥିତ ଯେ ଥିଲେ ତାଙ୍କଭିତରୁ ନିଜସାହ ଯାହା କରିଗଛନ୍ତିଲେ ହାକମମେଲନ ବସିବ ସେଥିରୁ ରାମାଶାମା ହାମା ନିକମା ଟୋକାଏ ମଧ୍ୟ ଆସି ସଂଖ୍ୟା ବୃଦ୍ଧି କରିଚନ୍ତି । ଗାଁଧୁଆବେଲ, ଧୋବଧାଉଲଯ୍ୟା ଚବଚକ୍ଷିଯ୍ୟା ଗ୍ରାମବାସୀଏ ନିତ୍ୟକର୍ମରେ ଅଟକି ଯାଇଛନ୍ତି । ବଡସାହେବ ଆସୁଚନ୍ତି ବୋଲି ଖବର ନଥିଲା, ଛୋଟହାକମଙ୍କ ବଦରଫଏସଲା ବେଳେ ତାଙ୍କର ଚେଚେକଛି ଜରୋଶ କାମ ନାହିଁ, କାମଥିବତ-ଅଉ ପ୍ରଜାଏ ଗୋରୁ,ପଦେ ପାଟିଫିଟାଇବା ସ୍ୱପ୍ନ, ବଳେ ତାଙ୍କୁ ଡାକନେବେ' ଯେ । ଅଜ ଫେର ଜାଣିଚନ୍ତି ଯେ ଅମୀନ ବରୁଦ୍ଧେ ଯେଉଁ ଅଭ୍ୟାଗ୍ରହ ଦରଖାସ୍ତ ପଡ଼ିଛି ଛୋଟହାକମ ତାହା ବୁଝିବେ; ତେବେ " ଲକ୍ଷ୍ମୀଥିଲାଲୋକ ଯେପରି କଥାରେ ସାକ୍ଷଦେବାକୁ ଯାଏନାହିଁ । ପେଟପାଟଣା ନାହିଁ କାହାର ? ପ୍ରଜା ତା କର୍ମ୍ମକୁ ନ ଆଦରି ପରଙ୍କନାଆରେ ଚୁଗଲି ହିବାଟା କେବେ ପସନ୍ଦ କରେନାହିଁ । ଅମୀନ ଯେଉଁ ଟିକସନଏ ତାହା'ତ ବନ୍ଦବସ୍ତ ଫିସ । ଗଜଗୀ ଛଡାଇନେବା ଗଛ ଯେ ପଞ୍ଚଗ୍ରେସ ପତ୍ୱାଧରେ ହାଯ୍ୟୀ ଶାଗ ମେଞ୍ଚାଏ ଛିଣ୍ଡାଇନେବା ପଡୋଶୀମଧ୍ୟ ହିପର ଶ୍ରେଣୀ ଅପରାଧରେ ଗ୍ରେର, ମାର ମାରୁ ଭଣ୍ଡାରଥ ମାରୁ, ମୀନ କଣ ଖାଲି ନେଉଚ ନିଜ ପୁଅମାଇପ ପୋଷିବବୋଲି ? ସରକାର କ'ଣ ଜାଣିନାହାନ୍ତି ଯେ ଟଙ୍କାଟାଏ ପାଇଁ ଦିନସାରା ଖଟି ପେଟେ ମୁଠାଏ ଖାଇବାକୁ ପାଇବନାହିଁ ? ଅଥଚ ଲକ୍ଷେ ପ୍ରଜାଙ୍କର

ଜୀବନନାଟିକା ତାଙ୍କ କଣ୍ଠରେ ଝୁଲାଇଦେଇଛନ୍ତି । ତାଙ୍କ କାମ ତାଙ୍କ
ଜବାବଦେହୀଙ୍କୁ ଚାହିଁ ତାଙ୍କ ୬।୭।୮ ଦରମ୍ହା ମାନୁଛନ୍ତି ? ଏବ
କାଲକୁ ଶହେ ଟଙ୍କା ପାଇବା ଚ ଜରସ୍ତାଟି ଆମ ଏ ଚୋଡ଼ାଣୀଖିଆ ଗର
ବଙ୍କଠେଉଁ ଥିଲ ! ସ୍ୱକମ୍ପ ଖଜଣା ଟିକସ ପଥକର ଏତେକଥା ଇସ୍ତ୍ରୀକୁ
ଇସ୍ତ୍ରୀ ସରକାର୍‌କୁତ ଗଣୁଛନ୍ତି ! ବଚାରୁ ଅମୀନ ଯାହା ଭରଷ
ବର୍ଷରେ ଥରେ ନ ଏନ୍ତି ଆଉ ଥରେ ମହିରେ ଦମ ଦୁଆରକୁ ଆସେ
ଏପରି କାମକୁ ସରକାର ଅମୀନର ଦରମ୍ହା ଶହେଟଙ୍କା କରିଥିଲେ
ସେଟଙ୍କାତ ଆମ ଏହି ପ୍ରଜାଏ ଦଅନ୍ତେ ? ଏଥିପାଇଁ ଗୋଟା
ଟିକସ ବସାଇଦେଲେ କାଲେ ବାବୁଭଯ୍ୟାମାନେ ଓଜର ଆପତ୍ତି କ
ନାଇଣ କରାଇବେ, ତେବେ ଅମୀନଙ୍କୁ ଅଳ୍ପଦରମା ନାଆଁକୁ ଦ
ଦେଇ ଗାଆଁ ଛାଡ଼ିଦେଲେତ ସେମାନେ ଗଡ଼ଆରୁ ମୀନଗଣିଲାପ
ଗଣିନେଇ ଆପଣା ପେଟ ପୂରାନ୍ତୁ, ଏକା କଥା !" ଏହିପରିକା ବ
ଙ୍କୀମାନେ ବରଗଛତଳେ ଖଟିଆରେ ବସିରହିବାକୁ ଅସିନାହାନ୍ତି
ଦଫାଦାର ଓ ଚାରିଟାଯାକ ଚୌକିଦାର ପୋଷାକ ଭଳି ଅ
ପରେହିଁ କଲାପରି ଠିଆହୋଇ ଗଲେଣି ?

କେହି କେହି ସହର ପାଠୁଆମାନେ ମଫସଲରେ ବଢିଥିଲେ ସୁଦ୍ଧା ସ
ରରହାଓ୍ୱା ଖାଇ ଏପରି ଉଛିକ୍ଷିତ ବବେକୀ ଲୋକଙ୍କୁ ମନୁଷ୍ୟ ଚ
ଗଣନ୍ତି ନାହିଁ, ମନେକରି ନଅନ୍ତି ଏଗୁଡାକ ପଶୁ, ଜମି ଚଷ
ଗାତ ଖାଆନ୍ତି, ଖଜଣା ବା ମହାଜନ ଦେଉଥାନ୍ତି ଓ ଘରେ ବା
ମାସ ରହି ସଂସାର ବୃଦ୍ଧି କରନ୍ତି ; କିନ୍ତୁ ତାଙ୍କର ଏତକ ନରମଦଳ
ଯୋଗ୍ୟ ନଗୁଛନୀତଗୁଡ଼ିକ ଆଦୌ ବୁଝି ପାରନ୍ତିନାହିଁ । ପ୍ରକୃତ
ଦେଖାଯିବ ଯେ ଗାଉଁଲି ଭଦ୍ରଲୋକମାନେ ଢୋଲର ଦୁଇପାଖ ବଜା
ଜାଣନ୍ତି, ଢୋଲ ଗିଇଁ ଜାଣନ୍ତି, ଓ ଢୋଲ ଫଟାଇ ଜାଣନ୍ତି, ଏ
ମହାଜନଗତପଥର ଧର୍ମାଧର୍ମକୁ ଲକ୍ଷକରି ଜଜର ପଛକେ ଷଡଯ
ଆମଯୋଗେ ସନ୍ଧ୍ୟାଦ୍ଧା ଦଣ୍ଡ ନପାଇ, କପରି ଶାନ୍ତିରେ ଦନ କେ

ଟାଇଦେଲେ ତେଣିକ 'ଯୋଡି,ଯୋଚ, ପକା' ଏସବୁ ଏକା. ଦୁନଆଁ-
ଲୋକେ ଯେମନ୍ତ ପର ହୋଇଥାନ୍ତି ପୁଅମାଇପ ସେହିପରି ପର ହୋଇ
ଯାନ୍ତି । "ଧନଯିବ କଥାସ୍ଥିବ" ଏହି ନୀତିକୁ ଏ ଗାଉଁଲି ଭଲଲୋକେ
ବୁଝିଥାନ୍ତି ଓ ବୃଷର ସହିଷ୍ଣୁତା ଗୁଣଟି ସମ୍ପୂର୍ଣ୍ଣ ଅଭ୍ୟାସ କରୁଥାନ୍ତି ।
ବଡକର୍ତ୍ତାଙ୍କ ପ୍ରଶ୍ନ "କିଛି ଓଜର ଆପତ୍ତି ଅଛିକି ନାହିଁ ?" ଏଥିର
ଉତ୍ତର ଦେବାକୁ ଉପସ୍ଥିତ ଶହ ପଞ୍ଚାଶ ପ୍ରଜାଙ୍କ ଭିତରୁ ଏ ତା'
ମୁହଁକୁ ଅନାଅନି ହେଲେ । ରଜାଙ୍କ ତହସିଲଦାରର ଭୁଣ୍ଡ ଖଜବକୁ
ହଉଚି ସତ କଲୁ ସେ'ତ ପ୍ରଜାନୁହେଁ ! ତେବେସୁଦ୍ଧା ସେ କହିଲା
ହଜୁର ପ୍ରଧାନ ପ୍ରଜା ଆସିନାହାନ୍ତି ଆସୁଚନ୍ତି, ଏଗୁଡ଼ିକ କିଛି ଜାଣନ୍ତି
ନାହିଁ" । ଶ୍ରେଷ୍ଟ ହାକମ ଏହି ଉତ୍ତରଟି ଇଂରାଜରେ ସମୁଝାଇ ଦେଲା-
ବେ କର୍ତ୍ତାଙ୍କର ମଣ୍ଣକିପ୍ଯାର ହଗ ଫେରଗଲା । ବଦର ତାଲିକା
ଗାଇ ନାମ ଡାକସ୍ତ କରି ଦେଖିଲେ ଯେ ଅମୃତମଣୋହି ନିଜଗୃଷ
ଦରଗୁଡ଼ିକରେ ଯେତେ ପ୍ରଜା ନାମ ଲେଖାଇ ନେଇଚନ୍ତି ସେ-
ଲେ ଅଧିକାଂଶ ଅନୁପସ୍ଥିତ । ତହସିଲଦାର ବଜୃସ୍କୁ ବାହି ମିଳି-
ଲା, ସେ କହିଲା "ହଜୁର ପ୍ରଜାଙ୍କର କିଛି ଏଥିରେ କିଛି ସମ୍ପର୍କ ନାହିଁ,
ଜଗୃଷ ଜମିଗୁଡ଼ିକରେ ନାମ କରାଇ ନେବାର ପ୍ରବୃତ୍ତ ଇଥିଲେ
ସେମାନେ ଆଜ ନ ଖାଇ ନ ପିଇ ଏଠି ପଡ଼ିଥାନ୍ତେଟି ? ଏ ଉପସ୍ଥିତ
ଜାଙ୍କ ଭିତରେ ଯେଉଁମାନେ ଅଛନ୍ତି ପଚାରି ବୁଝାଯାଉ ସେମାନଙ୍କର
ଜର ଅଛିକି ନାହିଁ" । ସେତେବେ ପ୍ରଜା ଏ ମଧ୍ୟ କହି ଉଠିଲେ "ନାହିଁ"
ଷ୍ଟ ହାକମଙ୍କୁ କିଂକର୍ତ୍ତବ୍ୟର ପରାମର୍ଶ ଦେଇସାରି ବଡ କର୍ତ୍ତା ଫେର
ଚାରିଲେ "ଆଗ ଏ ଅମୀନ ହରୁଙ୍କେ ତୁମ୍ଭମାନଙ୍କର କିଛି ଆପତ୍ତି
ଅଛି" ? ଏତେବେଳକୁ ମାନଖାଁ ଓଗେର କେତେକ ଲୁହାଳୟା
ଜା ଆସିଗଲେଣି । ଶିରଧାରୀ ତିଡାରୀ ଆଖିରୁଜ ମଦନମୋହନ ଜପୁ-
ଏ, କ ପରିଣାମ ହେବ ଦେଖାଯାଉ । ତେନମାନ୍ୟ ଆଖିରୁଲାଇ
ହାକୁ ଇସାରା ଦେଉଥାଏ । ଦଣ୍ଡେ ସମସ୍ତେ ଚୁପ ରହିଗଲେ ।

ପରେ ମାନଖାଁ ପଠାଣ ବାହାରିପଡ଼ି କହିବାକୁ ଆରମ୍ଭକଲା ଯଥାଃ ଏ' ଅଖ
ତାରିଶାଲ୍ଲ ବନ୍ଦବସ୍ତ ଅମଲଠାରୁ ଲଗାଇ ଏ ଅମଲଯାଏ ସଫ୍ଘା ଦେଖ
ଆସିଲେଇଁ ଅମୀନ ଯେଉଁ ଗାର ମାରିଥିବ ସେ ବ୍ରହ୍ମାଙ୍କ ବିଧାତା ଲିଖନ
ପ୍ରାପ୍ତ । ସେ ଗାରକୁ ଅଦଲ୍ କରିବାଲାଗି ଲୋକଙ୍କ ଯାନାସନ ଯାଉଛ
ତେବେସୁଦ୍ଧା ସଫ୍ଘା ଅଦଲ ହୋଇପାରି ନାହିଁ ତେବେ ଗିରିଧାସ
ଅମୀନଙ୍କ' କପାଳକୁ ସହସ୍ରଗୁଣେ ଭଲ, ତା ନାଁଅରେ ମିଛସତରେ ଯେ
କହିବ ବିଧାତା ସେଥିରୁ ତାହାର ମୁଣ୍ଡରେ ବଜ୍ର ଖଞ୍ଜିଦେବେ
ଅମୀନକୁ କଏ ବା କଣ ଦେଇଥିବ ସେ ନଜେ କଛି ପାଦୁଲାଟିଏ
ପାନଖଣ୍ଡିଏ ଦେଇନାହିଁ—ବରଷ୍ଣ ବଡବଡ଼ଥ ଆଉ୬ ମାନେ ଦ
ଗୋଲମାଳ କର ଯାଉଛନ୍ତି, ହଜୁରରୁ ଏହି ଚରଗଛତଳ କବ
ଆସ୍ଥାନ ବଦରଟି ଶୁଣାଗଲେ କେତେକଥା ବାହାର ପଡ଼ପାରେ
ଶେଷରେ ହାକମ ଏତକ କଥା ଇଂରାଜରେ ସମୁଝାଇଦେବାରେ 'କବ
ଆସ୍ଥାନ' ବଦରକାଗଜ ଓ ନକସାଟି ବଡ଼କର୍ତ୍ତାଙ୍କ ସମ୍ମୁଖରେ ପଡ଼
ଗଲା । ବଦରଗୁଡ଼କ ମୁନସରମ୍ମିର୍ଯ୍ୟାଁର ହାତଲେଖା ଦେଖି କାନୁନଗ
ସାହେବ ମୁନସରମ୍କୁଂ ଡାକ ସାମନା ପାଖରେ ଠିଆ କର
ଦେଲେ । ବଦରର ଲେଖା ଓ ଇତହାସରୁ ହାକମଙ୍କ ସନ୍ଦେହ କ
ବାର ଜୁଉ' ନାହିଁ ଯେ ଏହି ବଦର ବାବତରେ ଖହଶହ ରୋଜଗା
ହୋଇପଡ଼ଛି । ଏହି ଗୁଡକ ତ ପ୍ରଜାଙ୍କ କଜ୍ୟା ନୁହେ ଜମୀଦାର
ଭହଙ୍କ ବଦର ଓ ତଉଜ୍ଜ କଜ୍ୟା । ଗଲା ବନ୍ଦବସ୍ତବେଳେ ଏହି ଜ
ଗୁଡକ ଇଜମାଲିତଲେ ରଖାଯାଇ କୈଫିୟତରେ କେବଳ ଗ
ଲେଖାଥିଲା, ଉବଳନ୍ ଗସଡାରେ ଅମୃତମଣୋହି ତଲେ ଲେଖାଯା
କେବଳ ଏତେ୬ ଗଛ ଲେଖାଥିଲା; ନୂତନ ହୁଦାଏଦ୍ ଅନୁସା
'ବ୍ୟବହାର' କାଲମ୍ବରେ କଣ ପୂରଣ ହେବା ଉଚିତ ଏହିକଥା ଦେ
ଏ ବଦର ଗୁଡ଼କ ଉତ୍ଥାପିତ, କାର୍ଯ୍ୟରେ କନ୍ତୁ କର୍ତ୍ତାଙ୍କ ଦୃଷ୍ଟି ପଡ଼
ଯେ କେତେକ ସ୍ଥାନରେ ପଠାଣଙ୍କ କବରମାନ ଅଛି, ତଚ୍ଛି

ୟବଧାନରେ ଏହି ବଡ ବରଗଛତଳେ କେତେଗୁଡ଼ାଏ ସିନ୍ଦୂରଲଗା
ଥର ମାଟୀଘୋଡା ଇତ୍ୟାଦ ଜମାଅଛୁ । ତେଣେ ରାଜାଙ୍କ ତହସିଲ୍
ାର ବଡ ବଡାଏ ତାଲପତ୍ର ଆଣି ମେଜସାମନାରେ ଥୋଇଦେଇ
ହିଲେ ଯେ "ହଜୁର ଏ ବୟାଳିସ ସାଲର ଉର୍ଦ୍ଦିରଥା, ଏଥିରେ ଜରବ-
ର ଦେଖାଯାଉ ଏ ସମସ୍ତ ଅନାବାଦଟା ଅମୃତମଣୋହ ଖାଲସା
ାହାଲଭୁକ୍ତ ବୋଲି ପ୍ରମାଣିତ ହେବ" । ତାଲପତ୍ରରେ ଏହପର
ଲ୍ୟବାନ୍ କାଗଜ ହୋଇପାରେ କୌଣସି କର୍ତ୍ତାଙ୍କର ଏତକ ଜ୍ଞାନ
ଥିଲା, ବଡକର୍ତ୍ତା ସ୍ୱୟଂ ଉପସ୍ଥିତ; ଯାହା ହୁକୁମଦେବେ କରାଯିବ
ତସ୍ତ୍ୱ ତାଲପତ୍ରଗୁଡିକ ଦସ୍ତାବଜ ହୋଇ ନପାରେ; ନଥିରେ ସାମିଲ
ସ୍ଥ ଅସମ୍ଭବ, ସହିମୋହର କାଗଜ ନୁହେଁ ଓ ଆଜକାଲି କଲଟରରେ
ଥିର ଅସ୍ତିତ୍ୱ ନାହିଁ ଜମୀଦାରର ଏ କାଗଜକୁ ବିଶ୍ୱାସ କଣ",
ତ୍ୟାଦି ଯୁକ୍ତିଲଖିଟାଇ ବଡକର୍ତ୍ତା ହୁକୁମ ଦେଇଗଲେ ଯେ ଏହା-
ନ ଯାହା କରିବାର ତାହା ଷ୍ଟେଟହାକମ କରିଦେବେ । ବଡ
ହେବ ତହୁଁ ହିସାବ ମିଳାଇ ଦେଖିଲେ ଯେ ଗଲା ବନ୍ଦବସ୍ତରେ
ୀଦାରଙ୍କର ନିଜଖଷ ତୁଇଶ କେତେ ଏକର ଥିଲା, ବର୍ତ୍ତମାନ
ମାଃସୀରେ ଶହେ ଏକର ହେଲେ ଛେ'ର; ସେ 'ଏଥିର କାରଣ'
ରନ୍ତେ ତହସୀଲଦାର ହାତଯୋଡ ଥରି କହିଲେ "ହଜୁର ଶହେ
ର ପର୍ଯ୍ୟନ୍ତ ନିଜଖଷଜମୀ ପ୍ରଜାଙ୍କୁ ପଟ୍ଟାକରି ଦିଆଯାଇଅଛୁ । ବଡ
ହେବ ଖୋଲଖାଡ଼ି ପ୍ରଶ୍ନ କଲାରୁ ପ୍ରକାଶହେଲା କି ମାଣକୁ ଜର-
ନ-ସଲାମୀ ହାରାହାରି ଶହେଟଙ୍କା ନେଇକରି ପୂର୍ବ ମାନେଜର
ହେବ ନିଜଖଷ ଶହେଏକରକୁ "ଉଏଣ୍ଟ ଷ୍ଟେଡବାନ୍" କରାଇ
ଲିଚନ୍ତି । ଏଥିରେ ଜମୀଦାରଙ୍କୁ କେତେ ଲାଭ ହେଲା କସୋଟ
ାରୁ ଦଶହଜାର ଟଙ୍କା ହେଲା । ତହସୀଲଦାର ବାବୁ ଥରି ହୋଇ
ଜନରସାହେବଙ୍କ ସପକ୍ଷରେ ଯେ କୈଫିୟତ ଦେଇଗଲେ
ାନରେ ପଡିଲାରୁ ବଡସାହେବ ମହୋଦୟ ରାଗ ଓ ଘୃଣାରେ

ଲିଲ୍ ପଡ଼ିଗଲେ ଓ ଅଧଘଣ୍ଟାଯାଏ ରାଗରେ କଣ ସବୁ ସାନ ସାହେ-
ବଙ୍କୁ କହିଗଲେ । ଅସଲ ବନ୍ଦବସ୍ତ ଯେଉଁଲାଗି ପାଇଁ ତାହା ତେବେ
କିଏ ଦେଖୁଛି ?

ତହସିଲଦାରଙ୍କ କଥାରୁ ପ୍ରକାଶହେଲା ଯେ ଜମୀଦାରମାନେ ଏ
ଜିଲ୍ଲାରେ ଆପଣା ୨ ନିଜଗୃଷ ଜମି ବନ୍ଧକ ତଥା ପଟ୍ଟାକରିଦେଇ ଲକ୍ଷ
ଟଙ୍କା ଗର୍ଭରେ ପକାଇ ଯାଉଛନ୍ତି । ନଚେତ୍ ନୂଆ ନିଜଗୃଷ ଲାଗି
ଏତେ ଜିଦ୍ କାହିଁକି ? ବନ୍ଦବସ୍ତରେ "ନିଜଗୃଷ" ହେଲେ ତାକୁ
ସମୟରେ ହସ୍ତାନ୍ତର କରି ଟଙ୍କା କରିନେବାପାଇଁ ରଏତି ଜମୀ
ବନ୍ଧକୁଦର ଯାହା ତାହାଉପରେ ଶତକରା ପଞ୍ଚାଶଟଙ୍କା ଦାଖଲ
ଖାରଜ ରୋସମ ବୋଲି ଜମୀଦାରଙ୍କର ତ ପାଉଣା ଅଛି ? ସୁତରା
ନିଜଗୃଷ ଜମୀଲାଗି ରଏତି ଦରର ଦେଢ଼ା ଜରସମନ ବା ପଟ୍ଟା
ସଲାମୀ ନ୍ୟାଯ୍ୟତଃ ନେଇ ନେ ଲଣି । ମାଣକୁ ଗୃରିଶଟଙ୍କା ଯାଏ ମ
ନିଆହୋଇଛି । ଜମୀଦାରଙ୍କ ଭିତରୁ ପ୍ରଥମେ ଯାହା ମୁଣ୍ଡରେ ଏବୁଦ୍ଧି
ଚୂଲିଲା ତାକୁ ଧନ୍ୟବାଦ । ଶିକ୍ଷିତ ଦରବାରୀ ଜମୀଦାର ନଟନେ
ଏତେଦୂର ଆଇନଜ୍ଞାନ କାହାର ହୁଅନ୍ତା ? ରଇତ ପଟ୍ଟା ପାଇଗଲେ
ସେ ଜମୀ ଚିରକାଲ 'ରଏତିସତ୍ୱ' ହୋଇଗଲା । ଏହିଟା କଣ ପ୍ରକୃ
ଆଇନ ?

ହାକିମମାନଙ୍କ ମଧ୍ୟର ଇଂରାଜି କଥାଭାଷାରୁ କିଏ ବା କ'ଣ ଠି
କରି ବୁଝିବ ? ମାନଙ୍କା ଓ ତାଙ୍କ ସାହିର ମୁକ୍ତାର ମିଯାଁ ଠାରଠାରେ
ଅନୁମାନ କରି ବଡ଼କର୍ତ୍ତାଙ୍କ ରାଗ ହୋଇଯିବାର କାରଣ ବୁ
ନେଲେ । ସଙ୍ଗେ ୨ ଏହି ଅନୁମାନ ସମ୍ବନ୍ଧେ ହାଲକାଲୁହାଲ
ଗୋଟାଏ ଚଉହି ବାର୍ତ୍ତା ବୁଲିଯାଇଥିଲା ଯଥାଃ—ଜମୀଦାରୀର ଦ
ଉଠାଇବାକୁ ତହିଁରେ ନିଜଚାଷ ନିଜଯୋତ ବାଗ ବଗାଏତ ନ
ମଛୁଆ ହାଟ ବଜାର କେତେ ୨ ଲାଭଦଏ ତାହା ଖରିଦ୍ଦାର ବ
ପ୍ରଥମେ ଦେଖେ । ପ୍ରକୃତରେ ନିଜଚାଷ ଜମି ଓ ବାଜେ ଅଦ
ଦେଖି ଜରସମନ ବଢେ ବା ଖସେ । ଯେଉଁ ଜମୀଦାରୀରେ ନିଜଚ
ନାହିଁ ତାହା କେହି ନେବାକୁ ଆଗ୍ରହ କରନ୍ତିନାହିଁ । ତାଲାଖିକ

ଜମିଦାର ନିଜଜାଷଗୁଡ଼ିକ ବିକି ତଥା ପଟ୍ଟାଦେଇ ସେତେଟଙ୍କା ପାଇଲେ
ନେଇଗଲେ ସେ ଜମୀଦାରୀର ମୂଲ୍ୟ କମିଯିବାରୁ ସରକାରୀ ରାଜସ୍ୱ-
ନିଲାମବେଳେ ତାହା ସରକାର ଜାଣେ ଜାଣିବେ ବା ବାଧହୋଇ
ଅନ୍ୟାୟସ୍ୱତ୍ୱାଦରରେ ନିଲାମ କରିଦେବେ । ଏଥିରେ ସରକାରୀ
ରାଜସ୍ୱପ୍ରତି ବହୁତ ବାଧାହେଲା । ବଡ଼କର୍ତ୍ତା ଏହି ମତକୁ ପୋଷଣ କହିଲେ
ଯେ 'ଅତଏବ ଏପରି ଜମୀଦାରଙ୍କ ଦସ୍ତାବେଜ'? ନିଜରାଷ ବଦର ଗୁଡ଼ିକ
'ରୁ ରଇତଙ୍କ ପକ୍ଷେ ତଗ୍ରୀଦେବା ବରଂ ଭଲଓ ନ୍ୟାୟସଙ୍ଗତ ଅଟେ" ।
ହେବ କହନ୍ତୁ ନକହନ୍ତୁ ପଠାଣ ମୁକ୍ତାର ତାଙ୍କ ମୁହଁ ସାହେବହୋଇ
ଏହା କହିଲେ କି ?

ମାନଖାଁ ଦେଖିଲା ଯେ ତାହା ମୁହଁକଥା ଗୁଡ଼ାକ ଆଉ ବାହାରି-
ବାର ସୁଯୋଗ ଚାଲିଯାଉଛି । ମୁନସରମ୍ କଟକିଆ ପଠାଣ ନୁହନ୍ତି,
ବାହାରଦେଶୀୟ ପଠାଣ, ଏହାଙ୍କର ସେହି ପଠାଣସାହିରେ ବାସ
ହେଲା ବସାଥାଇ ଦ'ଚାରିଟା କଲଙ୍କ କଥାକୁ ଘୋଡ଼ାଇ ରଖିଦେଇ
ଲେ ମୁଦ୍ଧା ଏବେ ଗୋଟାଏ ଘଟଣା ହେଲାଣି ଯେ ଜନୈକ ଭାତ୍ରି-
ଅ ଆପଣା ଜନ୍ମସ୍ଥାନ ଓ ଜନ୍ମଦେଶ' ତ୍ୟାଗକରି ମୁନସରମଙ୍କ ମଗଧ-
ଦେଶକୁ ତୀର୍ଥକରି ଯିବାର ଏକପ୍ରକାର ନିଷ୍ପତ୍ତି । ପଠାଣସାହିର ଭଲ-
ଲୋକା ଜଣାଗୁଣା; କିନ୍ତୁ କଥାଟା ବାହାରକୁ ନ ପଡ଼ୁ ଏ ମୁନସରମଟା
'ମନ୍ତ୍ର ଛଡ଼ାଯାଉ ହୁଅନ୍ତା କି ? ମାନଖାଁ ଗୁପ୍ତେ' ଏହି ପରାମର୍ଶ
କରି ଆସିଛି । ସୁତରାଂ ସେ ଆଗକୁ ବଢ଼ିଯାଇ ଆଉକଣ କହିବ ?
ଲ ଦେଉଛ, ବଡ଼କର୍ତ୍ତା ଆପଣାର ଚତୁର୍ଦ୍ଦସ୍ତ ପରିମିତ ଚାବୁକକାଠିକୁ
ଉପରେ ପିଟିଦେଲେ । ଯେତେକ୍ଷେ ପଠାଣ ଓ ନଜ ମାମଲତକାର
ରି ପଛକେ ଏ ମଫସଲିଆ ଓଡ଼ିଆପଠାଣକିଁ ? ମାନଖାଁ
ଟା ଦାଉ' ପଡ଼ିଗଲା ଓ ସେ ରୁହମାରି ଅନ୍ତର ହୋଇଗଲା
କିର ଶବ୍ଦଟି ଯାହା କାନରେ ବାଜିଛି ସେ ଥରୁଛି ମୋ ଉପରେ
ପାରୁନ ବସିଲା କି ? କେବେ ବା କେମନ୍ତେ ବନ୍ଧୁକ ଫାଏର ଶବ୍ଦ
ଶବେ, ଗୋରାଙ୍କ ଚାବୁକମାଡ଼ ମଫସଲ କାହିଁକି ଶୁଣନ୍ତେ ?






ଶେଷକୁ ବାଞ୍ଛାକର୍ତ୍ତା ଛୋଟ ହାକିମଙ୍କୁ ଜଣ ମୁହଁମୋଡ ଗା
ଦେଲାପାଇଁ କହିବୋଲି ଦେଇ ଅଛନ୍ତି; କାରଣ 'ସାର୍କଲମଧ୍ୟ
ଖାଟିବ ଅମୀନଙ୍କ ମଧ୍ୟରୁ ଶତକଡ଼ା ତାଙ୍କୁ ପାଞ୍ଚଟି ଦେଖିବାର ନାୟ
ଆପେ ହାତରେ ବାନ୍ଧରହନ୍ତି ପରା ? ଏଠି ଗୋଟାଏ ଗଲା, ଅନ୍ତର ଦ'
ହାଲକାରେ ଦ'ଟା ଅମୀନଙ୍କ କାମ ତଦାରଖ କର ସଞ୍ଜବେଳକୁ ପ
ସନ୍ତୋଷ ଧରବେଇ ଧରବେ । ହାର୍ଡ୍ୱାକଲ ଗାଡ ମୋଟରକାର୍ ଯେ
ଅପେକ୍ଷା କରଛ, କୋଡ ଏମାଇଲ ଅଧଘଣ୍ଟାଏ ଲାଗିବ । ରାତିକୁ ପ
ହୋଟେଲରେ ଖାନା ଓ ଶଯ୍ୟାଲାଗି, ଆଗରୁ ଖବର ଯାଇନାହିଁ । ବ
ଯାହେବ ଅଦୃଶ୍ୟହେଲାରୁ ଛୋଟକର୍ତ୍ତା ବାହାରଲେ, ପକ୍ଷୀରାଜଟି ଅଦୃ
ଆଉ ଏ ମୌଜାରେ ବସିରହିବା ଅସମ୍ଭବ । ଏଠାରେ ବାହକଥ
ସ୍ୱଦ୍ଧା ପାଲ୍କି ଯାନ ବାହନ ଅପ୍ରାପ୍ତ, ଶଗଡର ବାଟ ଏକପ୍ରକାର ଅ
ସୁତରାଂ ଗିରିଧାରୀ ଅମୀନଙ୍କ କପାଳ ଆଜ ଏକପ୍ରକାର ଥମିଗ
ତକେଗଲେ ବାରହାତ । ତରବରରେ ସେ ଖରାରେ ଦୌଡାଦୌ
କରି ଆପଣା ହାକିମଙ୍କ ଲାଗି ଗାଡଖଣ୍ଡିଏ ଯୋଗାଇଦେଇ ଘୋ
ଛାଡିଦେଇଥି ୨ାକାର୍ଯ୍ୟର କ୍ଷତିପୂରଣ କରିଦେଲେ । ଲୋକେଜାଣି
ଯେ ତାଙ୍କ ମକଦ୍ଦମା ଅନ୍ତୁରି ହପ୍ତାଏ ଘୁଞ୍ଚିଗଲା ଓ ହାକିମ କଡା ହୁ
ଦେଇଗଲେ ଯେ ଏହି ହପ୍ତାକ ମଧ୍ୟରେ ସେ ଯେପରି ଦେ
ଏ ମୌଜାର ପଏମାସୀ ସାରିଦେବେ, ଖସଡା ତସ୍ୟାରିଥିଲେ ଖତ
କାମ କମ୍ପୁଡେରାରେ କରାଯି ; ଓ ସମୟଦେଖି ଆପଉ ନଥି
ଗିରିଧାରୀଙ୍କୁ ଅନ୍ୟମୌଜା ସୁଦ୍ଧା ମିଳପାରିବ । ଏତକିଂର ଶେଷପ
"ଅଧର୍ମମାଲ ଫଟଲ ବନ୍ଧୁତ ଗଲାବେଳେଯାଏ ମୂଳସହିତ" ।
ଏତେବେଳେ ଯାଇଁ ଗିରିଧାରୀଙ୍କ ଛାତରେ ପବନପଶିଲା; ରା
ରାତି ସାହାଡାଗଛତଳୁ ମାଲତକ ଆଣି ଆପଣାକୁର୍ତ୍ତାଯେଟ
ହିଲେଇ କରିଦେଇ ଟ୍ରଙ୍କରେ ଥୋଇଲେ, ଏ ଅଭ୍ୟାସର ମ
ତମାଟା ଏହିପରି ଫସ୍କି ଗଲାପରା; ଏଥର ତାଲାଗ' କରିଦେ